# ACHARYA HARIHAR
# Annual



"ତୁମେ ସବୁ ଭଲ ମଣିଷ ହୁଅ । ଭଲ ମଣିଷ ହେବା
ପାଇଁ ଭଲ ଘର, ଭଲ ଗାଡ଼ି, ଭଲ ପୋଷାକ ଦରକାର
ହୁଏ ନାହିଁ। ବିଳାସ ବିଭବ ମନୁଷ୍ୟକୁ ଅମଣିଷ କରେ।
ତୁମେ ଇଞ୍ଜିନିୟର ହୁଅ, ଡାକ୍ତର ହୁଅ, ଓକିଲ ହୁଅ,
ବ୍ୟବସାୟୀ ବା ଶିକ୍ଷକ ହୁଅ—ସବୁକ୍ଷେତ୍ରରେ ଭଲମଣିଷ
ଆବଶ୍ୟକ ।"

—ଆଚାର୍ଯ୍ୟ ହରିହର—

# Acharya Harihar Education Society (AHEDS)

Sri J.C. Buddharaj
Patron

Er. Benudhar Mahapatra
Patron

AHEDS Manages the following Educational Organisations,

1. Acharya Harihar Mahavidyalaya & Pracharak Ananta Misra Granthagara
2. Kantakavi Fund
3. Folklore Academy, Bhubaneswar
4. Bairagi Misra Institute of Technical Education,
5. Publications Department

and offers scholarships, aids to deserving students in the country within its financial limitations.

Sri Biraja S. Acharya
Secretary

Dr. Bhabagrahi Misra
President

# —WE MARCH ON AND ON—

**Acharya Harihar Education Society**

[ PR-589/385-1981-82]

Income Tax Registration No. ADM [GL] 53/24/81-82

Sri. J.C Buddharaj
Patron

Er. Banudhar Mahapatra
Patron

We have just completed eight years. We began our journey on 15th July 1981 and we are still continuing to work hard to establish "Centres of Learning"- as temples of modern day world. Are we happy in what we have achieved ? Do we need to exist ? What new directions have we offered ? Have we been able to help those who really need us ? - Several such questions may be raised. Or we may be praised or be condemned.

But we march on and on till we reach our goal. So many friends have left us. New friends have joined. But We have survived to remain as an institution. We love who trust us or those who even distrust us, - we need them all. Since we have promised to continue our effort as long as we can.

So friends and foes, we welcome your suggestions, remarks, criticism and whatever you can offer. We need you, even if you may not need us. But time will only tell, whether we needed each other or not. We think all of you again. Hope the coming years will be better than before.

**Biraja S. Acharya**
Secretary

**Bhabagrahi Misra**
President

## OUR GUESTS & VISITORS

1. Dr. David M. Brookman,—Fort Hays University, Kansas, USA.
2. Dr. R. N. Dixit—Regional College of Education, Bhubaneswar.
3. Dr. Aditya Kumar Mohanty—Utkal University
4. Professor Swamiji—Mathura University
5. Sri Biswaranjan Satpathy—Vivekananda Yuba Mandal, BBSR.
6. Sri Nirmal Ch. Roy—Sarvodaya worker
7. Sri Kulamani Nayak—Angul Govt. College,
8. Sri M. M. Sarwar--Bhubaneswar Islamic Community.
9. Sri Malkat Singh—Gurudwar, Bhubaneswar
10. Dr. Lalit Mohan Mahanty--MLA
11. Smt. Padmini Tripathy—Rama Devi Women's College
12. Er. Asish Das—Christian Community, BBSR

## OUR STUDENT AWARDEES

| | |
|---|---|
| 1. Sri Malaya Panda<br>2. Sri Kishore Panda<br>3. Sri Durga Dash | Prize winners at Dr. Hedgewar Centenary Celebration, Sahidnagar, BBSR |
| 1. Lingaraj Muduli<br>2. Minerva Send<br>3. Subash Jayasinhh | Prize given by Acharya Harihar Sanskruti Sansad, Puri |
| 1. Laxmidhara Behera, BJB College, BBSR | Prananath Pattnaik Scholarship for 1987-88 |

ଯେଉଁମାନେ ସ୍ତୁତିଗାନ କରନ୍ତି, ସେମାନେ ବର୍ଣ୍ଣନା ଦେଇ କହନ୍ତି ସେ ଭଗବାନଙ୍କୁ ମଧ୍ୟ ଏଡ଼ିଦେଇ
ସ୍ଥିର ହୋଇ ଥାଆନ୍ତି । ଏହା ହିଁ କହନ୍ତି ସେକ୍ସପିୟର—

୩୦ | ୩ | ୮୯

ବଂଧୁଗଣ !

କେତେ ଆଶା-କେତେ ଆଶ୍ୱାସନା, ପୁଣି ହତାଶା ଅବା କ୍ଷୋଭ । ଯୁବଶକ୍ତି ଭିତରେ ଏଇ ଯେଉଁ ଉଦ୍‌ବେଳନ ତା'ର ଯେପରି ଇତି ନାହିଁ ।

କେତେ ଲୋକଙ୍କର କେତେ ମନ୍ତବ୍ୟ, କେତେ କଟୁକ୍ତି, କେତେ ଧମକ । ପୁଣି କେତେ କୌଶଳ, କେତେ ଛଳନା । ଏ ସବୁ ଅଗ୍ରୟାଁ ହରିହରଙ୍କବେଳେ ଥିଲା । ଅଭାବଗ୍ରସ୍ତ ଓଡ଼ିଶାବାସୀ ସେଇଥିପାଇଁ ଅଗ୍ରୟାଙ୍କୁ ଗ୍ରହି ବସିଥିଲେ !

ଏବେ ସମସ୍ତ ବଦଳିଛି— ଲୋକେ କ୍ରମଶଃ ଭାବରାଜ୍ୟରେ ସମୃଦ୍ଧ ହେଉଛନ୍ତି (?), ଅର୍ଥନୈତିକ କ୍ଷେତ୍ରରେ ଆଗୁଆ ହେଉଛନ୍ତି - କିନ୍ତୁ କାହିଁ ଆଉ ଅଗ୍ରୟାଙ୍କ ଭଳି ଲୋକଟି ବାହାରୁ ନାହାନ୍ତି ? ତାଙ୍କର କାମରେ ଲାଗିଥିବା ଲୋକେ ତାଙ୍କୁ ମନେ ପକାଉ ନାହାନ୍ତି - କଥା ଆଉ କାମ ଭିତରେ ବ୍ୟବଧାନ ବଢି ଚାଲିଛି ।

ତଥାପି ଅଗ୍ରୟା ହରିହର ଏଡୁକେସନ ସୋସାଇଟି ତାର କର୍ତ୍ତବ୍ୟ ପଥରେ ଆଗେଇ ଚାଲିଛି - ଆଠବର୍ଷ ପୂରିଗଲା ଆସି । ଏବେ ବି ଚପଳତା ରହିଛି - ଯଦିଓ ଗାମ୍ଭୀର୍ଯ୍ୟର କଥା, କହି ଆସିଛି । ଏକ ବ୍ୟକ୍ତି ପରି ଏକ ଅନୁଷ୍ଠାନର ଜୀବନରେ ଏହା ସ୍ୱାଭାବିକ । କେବଳ ଅସ୍ୱାଭାବିକ ହେଉଛି ଆମର ସ୍ୱପ୍ନ - ସ୍ୱପ୍ନ କଣ ସତ୍ୟ ହୋଇପାରେ ?

କିଏ କହିବ - ତେଣୁ କାର୍ଯ୍ୟ ଚାଲୁ ରହୁ - ଚାଲୁ ରଖାଯାଉ । ଭବିଷ୍ୟତ ହିଁ କହିବ, ଆମେ କଣ କରିଛୁ, କରିପାରିଛୁ ବା କରିପାରିବା ସମ୍ଭବ ଥିଲା ।

ପୁଣି ଆପଣମାନଙ୍କର ସ୍ନେହ, ଶୁଭେଚ୍ଛା ଚାହୁଁଛୁ । କିନ୍ତୁ ମିଛର ବିନିମୟରେ ନୁହେଁ —କଣ ଆପଣମାନେ ପାରିବେ ? କାହିଁକି ବା ନ ପାରିବେ ! ଅଗ୍ରୟା ହରିହର ତ ଆମ ସମସ୍ତଙ୍କ ପଛରେ ଅଛନ୍ତି ଓ ପୁଣି ଆଗୁଆ ହୋଇ ଆମକୁ ବାଟ କଢ଼େଇ ଦେଇ ଯାଇଛନ୍ତି ।

ନମସ୍କାରାନ୍ତେ —

ଆପଣଙ୍କର
**ଭବଗ୍ରାହୀ ମିଶ୍ର**
ସମ୍ପାଦକ

# ମାଟିର ଦ୍ରୋଣ

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

[ ୧ ]

ପ୍ରଭାତ ପ୍ରହରେ
ବିସ୍ଫାରିତ ବିଲୋଳ ଆଖିରେ
ସେଦିନ
କେତୋଟି ତରୁ;
ଖୋଜୁଥିଲେ
ନୂଆ ଏକ ଧରା ।

ଅଦୂରେ
ମାଟିର ଦ୍ରୋଣ
ଶତାବ୍ଦୀର
ଏକଲବ୍ୟ
ପଚାରଇ ଦେଖି

ଶୁଣିଛକି
ଦ୍ରୋଣନାମ
ସମସ୍ତର ସ୍ୱର
ଛୁଣ୍ଟିଅନା
କୁଞ୍ଜ ଅବା
କଣ୍ଟକ ସହର ।

କୁଡ଼ିଆ
ଆଗରେ କେବେ
ଠିଆ ହୋଇଛନ୍ତି :
ପକ୍ଷୀଙ୍କର ଗୀତ
ଏବଂ
ଫୁଲଙ୍କର
ଗପ ଅବା
କାନେଇ ଶୁଣନ୍ତି ।

ତାଙ୍କୁ ଜମା
ବାଧେ ନାହିଁ
ବରଷା କାକର
ମୁହଁରେ
ଟେନାଏ ହସ
ଦୁନିଆ ଗୋଟାର ।

*

[ ୨ ]

ସବୁବେଳେ
ମୁହଁ ସଜେ
ସନ୍ତୃପ୍ତ ଆଖିରେ ;
ଡାକୁଥିଲେ
ଅନାଗତ
ତାରମାନଙ୍କରେ

ହୁଏତ
ଭେଟିବ ତୁମେ
ମାଟିର ଦ୍ରୋଣଙ୍କୁ
ସଶଙ୍କରେ
ଘୂରୁଥିବେ
ଗାଁରୁ ଗାଁକୁ ।

କହୁଥିବେ
'ଖୋଜୁଛି ମୁଁ
କେବଳ ମଣିଷ
ମୋ ଆଖିର
ଜ୍ୟୋତିସବୁ
ମଣିଷ ଖୋଜାରେ ଯଦି
ହୋଇଯାଏ ଶେଷ ।

ତୁମେ ସବୁ
ଆଶାବାଡ଼ି
ସେହି ଅନ୍ଧନର ।

ଠୁକୁ ଠୁକୁ
ପାଦ ଥାପି
ଗାଁ ମାଗେ
ଭୂମି ମାଗେ
କୋଟି ମଣିଷର ।

ପଚାରିଲେ
କହେନାହିଁ
ମୁହଁସାରା ହସ
ସେବାର
ବେଦିକା ତଳେ
ଆତ୍ମଦାନ
ମାଗୁଥିବ
ହୁଏ ତ ସେ
ହୋଇଥିବ
ସଦାସ୍ଫୂର୍ତ୍ତି
ହରିହର ଦାସ ।

*

ପ୍ରଫେସର, ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ

# "ଏହି ସୁଝୀଲ" ମୁଁ ହେଚି କିଏ ?

ସରୋଜ ଖାଁ
ପ୍ରଥମ ବାର୍ଷିକ କଳା ଛାତ୍ର

ଆଚାର୍ଯ୍ୟ ମହାଶୟଙ୍କ ସମ୍ପର୍କରେ ଲେଖିବା ମୋ ପକ୍ଷରେ କଷ୍ଟକର । ମୁଁ ତାଙ୍କୁ ପାଖରେ ଦେଖି ନଥିଲି କି ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିନଥିଲି ।

ଆଚାର୍ଯ୍ୟ ହରିହରଙ୍କ ସମ୍ପର୍କରେ ଯାହା କିଛି ମୁଁ ଅନ୍ୟମାନଙ୍କ ଲେଖାରୁ କିମ୍ବା କଥାରୁ ଜାଣିଛି । ତାଙ୍କ ଶେଷ ଜୀବନରେ ସେତେବେଳେ ସେ କଟକର ଥୋରିଆସାହିର ଗୁଣନିଧି ଭବନରେ ରହୁଥିଲେ । ସବଳ ପାଦରେ ଚାଲିବା ମଧ୍ୟ ତାଙ୍କ ପାଇଁ ସେତେବେଳକୁ ବିଶେଷ ସହଜ ନଥିଲା । ସଚିବାବୁ ଆଚାର୍ଯ୍ୟ ମହାଶୟଙ୍କ ବ୍ୟକ୍ତିଗତ ସହକାରୀ ଭାବରେ ଦାୟିତ୍ୱ ନେଇ ତାଙ୍କ କଥା ବୁଝା ବୁଝି କରୁଥିଲେ ।

ଗୋପବନ୍ଧୁଙ୍କର ଖାସ ସହଯୋଗୀ ଥିଲେ ଆଚାର୍ଯ୍ୟ ହରିହର । ନେତା ହେବାର ଅଭିଳାଷ ଦୂରରେ ଥିଲା ସେବକ ହେବାର ବାସନା ଓ ସାଧନାହିଁ ଅସଲ କଥା ଥିଲା । ସ୍ୱାଧୀନତା ପାଇଁ ଆନ୍ଦୋଳନର ଏକ ମାଧ୍ୟମ ଥିଲା ମଣିଷ । ମାନବବାଦୀ ଅଭିବ୍ୟକ୍ତିର ପ୍ରତୀକ ଭାବରେ ଆଚାର୍ଯ୍ୟ ହରିହର କୌଣସି ଲାଭ କ୍ଷତିର ହିସାବ ନ ରଖୀ କାମ କରିଯାଉଥିଲେ । ନିନ୍ଦା ପ୍ରଶଂସାର ଅପେକ୍ଷା ନଥିଲା ।

ମୂଲ୍ୟବୋଧର ଭିନ୍ନ ମାପକାଠି ଥିଲା ଆଚାର୍ଯ୍ୟ ହରିହରଙ୍କ ଜୀବନରେ । ଘର ସଂସାର ଥିଲା ସାମାଜିକ ସେବା ସାହାଯ୍ୟରେ ଦୁଃଖୀର ଦୁଃଖରେ ଦୁଃଖୀ ଦୁଃଖୀର ମୁହଁରେ ହସ ଟିକିଏ ଦେଖିଲେ ହରିହରଙ୍କ ମନରେ ସୁଖ । ପରକୁ ଆପଣା କରିବା ତାଙ୍କର ପ୍ରବୃତ୍ତିଥିଲା ।

ଏମିତି ଭଲ ମଣିଷଟିଏ ହେବା କଠିନ । ଯଦି କେହି କହେ ମୋର ଜଣକ ପାଇଁ କିଛି କାମକଲେ ଲୋକେ ପ୍ରଶଂସା କରିବେ ତେବେ ଏପରି ଭାବନା କଣ ଆଚାର୍ଯ୍ୟ ହରିହରଙ୍କ ମନରେ ଥିଲା ।

ସୁଖିଲା ଦେହ ଓ ମୁହଁ ତଥାପି ସେଥିରେ କି ଆକର୍ଷଣଥିଲା ସେ ଆଖିର କି ଦରଦ । ସେ ଲୋକଙ୍କୁ କହୁଥିଲେ "ଗାନ୍ଧୀ ଭଗୀରଥ ଯେଉଁ ସ୍ୱରାଜ୍ୟର ଗଙ୍ଗାକୁ ନିଜ ତପସ୍ୟା ବଳରେ ଆଣିଲେ ସେ ଗାଁ ଗହଳିରେ ରହିଛନ୍ତିତ ? ସ୍ୱରାଜ୍ୟ ଗଙ୍ଗାତ ସହରରେ ଅଟକି ଯାଇଛନ୍ତି । ତାଙ୍କୁ ଗାଁକୁ ଆଣିବା ପାଇଁ ଆଗକୁ ଆହୁରି ତପସ୍ୟା କରିବାକୁ ପଡ଼ିବ । ସ୍ୱାଧୀନତାର ୪୦ ବର୍ଷ ପରେ ସ୍ୱତଃ ମନରେ ପ୍ରଶ୍ନ ଉଠେ ଆଜି କଣ ସେ ଅବସ୍ଥାର ପରିବର୍ତ୍ତନ ହୋଇଛି ?

ଆଗ୍ରର୍ଯ୍ୟ ମହାଶୟ ସାହିତ୍ୟ ବେଶି ଲେଖିନାହାନ୍ତି । କିମ୍ବା ଦର୍ଶନର ବ୍ୟାଖ୍ୟା କରିନାହାନ୍ତି । କିନ୍ତୁ ତାଙ୍କ ଜୀବନହିଁ ଏକ ବିରାଟ ସାହିତ୍ୟ ଓ ଦର୍ଶନ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍କୁଲ ଛାତ୍ର ଛାତ୍ରୀମାନଙ୍କ ପାଇଁ ତାଙ୍କ ରଚିତ 'ଗ୍ଲଇଡସ୍ଇଜି ଫାଷ୍ଟ ଗ୍ରାମାର' ଓ ଗୀତା ସର୍ବତ୍ର ଆଦୃତ ଓ ଜନପ୍ରିୟ ।

ତାଙ୍କର ସରଳ ଓ ନିରହଙ୍କାର ଗୁଣ ସମ୍ପର୍କରେ ଗୋଟିଏ ଛୋଟ ଉଦାହରଣ ଥରେ ଖବରକାଗଜରେ ବାହାରିଲା ତାଙ୍କୁ ଡକ୍‌ଟରେଟ୍ ଉପାଧି ମିଳିବ ଏକଥା ଶୁଣିବା ମାତ୍ରେ ସେ କହିଲେ "ମୋତେ ଲୋକେ ଯେଉଁ ଆଗ୍ରର୍ଯ୍ୟ ଉପାଧିଟା ଦେଇଛନ୍ତି ମୁଁ ତ. ତାର ଯୋଗ୍ୟ ହୋଇନି । ପୁଣି ଏ ଡ଼କ୍‌ଟରେଟ କାହିଁକି ? ଏହା ପରେ ସେ ଡକ୍‌ଟରେଟ୍ ଉପାଧି ଓ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରଦତ୍ତ ମାନପତ୍ର ଗ୍ରହଣ କରିନଥିଲେ ।

ପିଲାଟି ଦିନରୁ ହରିହର ସତ୍ୟ, ସେବା ଓ ତ୍ୟାଗ ମନ୍ତ୍ରର ସାଧକ ଥିଲେ । ପୁରୀ ହାଇସ୍କୁଲରେ ପଢ଼ିବା ବେଳେ ରଥଯାତ୍ରାରେ ହଇଜାରୋଗ ମାନଙ୍କ ଶୁଶ୍ରୂଷା କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟଥିଲା ସେତିକି ନୁହେଁ ବନ୍ୟା ମରୁଡ଼ି ଆଦି ସମୟରେ ହରିହର ବିପନ୍ନ ଲୋକମାନଙ୍କ ପରମ ସହାୟକ ଥିଲେ । ତାଙ୍କ ଜୀବନର କେତେଗୁଡ଼ିଏ ଘଟଣାର ଦୃଷ୍ଟାନ୍ତରୁ ଆଗ୍ରର୍ଯ୍ୟ ହରିହରଙ୍କ ଜୀବନର ମହତ୍ତ୍ୱ ପ୍ରତିପାଦିତ ହୋଇପାରିଛି । ଥରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର କୃପାସିନ୍ଧୁ ବୟସ ଆଠ କିମ୍ବା ନଅ ହେବ । ରାତିରେ ଶୋଇଥିବାବେଳେ ମୁତି ଦେଇ ନୀଦ ଭାଙ୍ଗିବାରୁ ଥରି ଥରି ହୋଇ କାନ୍ଦିଲେ । ଛାତ୍ରାବାସରେ ପରିଗ୍ରଜକ ଶିକ୍ଷକ ହରିହରଙ୍କ ହୃଦୟ ବ୍ୟଥାତୁର ହୋଇଉଠିଲା । ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ସେ କୃପାସିନ୍ଧୁ ପାଖରେ ପହଞ୍ଚି ତାର ଲୁଗା ଓ ବିଛଣା ବଦଳାଇବା ସଙ୍ଗେ ସଙ୍ଗେ କାନ୍ଧେଇ ପକାଇ ବୁଝାଇଲେ । କିନ୍ତୁ ସେଥିରେ କୃପାସିନ୍ଧୁର କାନ୍ଦ ବନ୍ଦ ହେଲନାହିଁ । ମାଆପାଖକୁ ଯିବ ବୋଲି ଅଝଟ କରିବସିଲା । ଏଣୁ ଅଧରାତିରେ କୃପାସିନ୍ଧୁକୁ କାଖେଇ ଆଗ୍ରର୍ଯ୍ୟ ହରିହର ତାଘରେ ପହଞ୍ଚାଇ ପୁଣି ଛାତ୍ର ବାସକୁ ଲେଉଟି ଆସିଲେ ।

ଏପରି ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ ଆଗ୍ରର୍ଯ୍ୟ ହରିହର । ସେ କେବଳ ସତ୍ୟବାଦୀର ଆଗ୍ରର୍ଯ୍ୟ ନୁହନ୍ତି ସମଗ୍ର ଦେଶରେ ଶୁଦ୍ଧ ନିର୍ମଳ ବିଗ୍ରର ବିବେକ ତଥା ମାନବିକତାର ଶିକ୍ଷାଦାତା ଆଗ୍ରର୍ଯ୍ୟ ଥିଲେ ।

ଆଗ୍ରର୍ଯ୍ୟ ହରିହର ୧୯୬୯ ମସିହାରେ ସଂପୂର୍ଣ୍ଣ ବିଶ୍ରାମ ନେଇ ପୁରୀରେ ରହିଲେ । ଏହି ସ୍ମୃତିର ମୁହୂର୍ତ୍ତିରେ ପ୍ରେମ ସ୍ନେହ ଓ ଆଦର ଭରି ରହିଥିଲା । "ହେ ଆଗ୍ରର୍ଯ୍ୟ ହରିହର ଘେନ କୋଟି ଆମ ନମସ୍କାର"

# ସତ୍ୟର ପୂଜାରୀ ଆଚାର୍ଯ୍ୟ ହରିହର

କିଶୋର କୁମାର ପାଢ଼ୀ
+୨ ଆର୍ଟସ ଫାଷ୍ଟଯଅର

ଆଚାର୍ଯ୍ୟ ହରିହର ତିରୋଧାନରେ ଗୋଟିଏ ଯୁଗ ଶେଷ ହୋଇଗଲା । ଆଚାର୍ଯ୍ୟ ହରିହର ଇହଧାମ ତ୍ୟାଗକରିବା ପରେ ସେଠାରେ ଥିବା ବହୁତ ଲୋକ କହୁଥିଲେ ଯେ ଏହି ଲୋକ ଏତେ ବଡ଼ଥିଲା । ମାତ୍ର ଆମ୍ଭେମାନେ ଜାଣିପାରୁ ନଥିଲୁ । ସେହି ଆଚାର୍ଯ୍ୟ ହରିହରଙ୍କର ଅନ୍ତର ଉଦାର ଓ ଧର୍ମ୍ମଶୀଳ ଥିଲା । ତେଣୁ ତାଙ୍କର ଅନ୍ତରର ପବିତ୍ରତା ପାଇଁ ଲୋକମାନଙ୍କର ସେବା କରୁଥିଲେ । ତେଣୁ ତାଙ୍କୁ ସତ୍ୟର ପୂଜାରୀ ଆଖ୍ୟା ଦିଆଯାଇଥିଲା । ଯଦି କୌଣସି ଗୋଟିଏ ଗ୍ରାମରେ ହଇଜା ଲାଗୁଥିଲା ତେବେ ସେ ନିର୍ଭୟର ସହିତ ସେମାନଙ୍କୁ ସାନ୍ତ୍ୱନା ଦେଉଥିଲେ । ସେ ମଧ୍ୟ ପାଖ ଆଖ ଗାଁ ଗୁଡ଼ିକରେ ବୁଲି ଲୋକ ମାନଙ୍କର ସେବା କରୁଥିଲେ । ଆଚାର୍ଯ୍ୟ ମହାଶୟ ମଧ୍ୟ ଜଣେ ସଂଗ୍ରାମି ଥିଲେ । ତେଣୁ ଭାରତର ସ୍ୱାଧୀନତା ସଂଗ୍ରାମ ଯେତେବେଳେ ୧୯୧୩ରେ ପ୍ରଥମ ଆଇନ୍ ଅମାନ୍ୟ ଆନ୍ଦୋଳନ ହେଲା ସେଥିରେ ଆଚାର୍ଯ୍ୟ ହରିହର ଓଡ଼ିଶାର ପ୍ରଥମ ସେନାପତି ଭାବରେ ଇଞ୍ଚୁଡ଼ି ଲବଣ କ୍ଷେତ୍ରରେ ଲବଣ ନିୟମକୁ ଭଙ୍ଗ କରିଥିଲେ ସତ ମାତ୍ର ତାଙ୍କୁ ବନ୍ଦୀ କରାଯାଇଥିଲା । ହରିହର ମଧ୍ୟ ୧୯୨୧ ରେ ହୋଇଥିବା ଅସହଯୋଗ ଆନ୍ଦୋଳନ ବେଳୁ ୧୯୪୧ ପର୍ଯ୍ୟନ୍ତ ଦୀର୍ଘ ପଚିଶି ବର୍ଷ କାଳ ସ୍ୱାଧୀନତା ସଂଗ୍ରାମରେ ଓତଃ ପ୍ରୋତଃ ଭାବେ ଜଡ଼ିତ ହୋଇଥିଲେ । ସେ ମଧ୍ୟ ଇଂରେଜ ସରକାରଙ୍କର ସହିତ ଲଢ଼େଇ ଚାଲିଥିବା ବେଳେ ଦୁଇଥର ସଭାପତି ହୋଇଥିଲେ । ଆଚାର୍ଯ୍ୟ ମଧ୍ୟ ଥିଲେ ଜଣେ ସଂସ୍କାରକ । ଏଥିପାଇଁ ତାଙ୍କୁ ଉତ୍କଳମଣି ଗୋପବନ୍ଧୁଙ୍କ ପରି ତାଙ୍କୁ ବହୁତ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଥିଲା । ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟରେ ଶ୍ରୀରାମଚନ୍ଦ୍ର ପୁରରେ ହରିହରଙ୍କର ଜନ୍ମ । ତାଙ୍କର ପିତାଙ୍କର ନାମ ଥିଲା ମହାଦେବ ବ୍ରହ୍ମା । ଆଚାର୍ଯ୍ୟ ହରିହରଙ୍କୁ ଯେତେବେଳେ ମାତ୍ର ପାଞ୍ଚବର୍ଷ ବୟସ ହୋଇଥିଲା ସେତେବେଳେ ସେ ତାଙ୍କର ମାତାଙ୍କୁ ହରାଇ ବସିଥିଲେ । ମାତ୍ର ଆଚାର୍ଯ୍ୟ ହରିହରଙ୍କର ବାଲ୍ୟକାଳ ବହୁତ ଦୁଃଖ ଦାୟକ ଥିବାର ଜଣାଯାଏ । ସେ ଯେତେବେଳେ ହାଇସ୍କୁଲରେ ପଢ଼ିଲେ ସେତେବେଳେ ତାଙ୍କର ମନରେ ସେବାକରିବାର ଗୁଣଟି ଅଙ୍କୁରିତ ହୋଇଥିଲା । ତେଣୁ ସେବାହିଁ ଥିଲା ତାଙ୍କ ଜୀବନର ସହଜାତ ଗୁଣ । ଆହୁରି ମଧ୍ୟ ସେ ବଢ଼ି, ମରୁଡ଼ି, ଦୁର୍ଭିକ୍ଷ ଓ ହଇଜା ବେଳେ ଗାଁ ଗାଁ ବୁଲି ଲୋକମାନଙ୍କର ବିଭିନ୍ନ ପ୍ରକାର ସୁବିଧା କରାଇ ଥିଲେ । ତାଙ୍କର ନାମ ମଧ୍ୟ ଶିକ୍ଷକ ହରିହର ନାମରେ ଖ୍ୟାତଥିବାର ଜଣାଯାଏ । ସେ ରାତ୍ରିରେ ଗ୍ରାମର ନିରକ୍ଷର ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ଶେଷରେ ତାଙ୍କର ମାତାଙ୍କର ଶିକ୍ଷକ ମଧ୍ୟ ସେ ହୋଇପାରିଥିଲେ । ୧୯୪୫ ମସିହାରେ ସେ ବ୍ରହ୍ମପୁର ଜେଲରେ ବନ୍ଦୀ ଅବସ୍ଥାରେ ଥିବା ପର୍ଯ୍ୟନ୍ତ ଶିକ୍ଷକତା ଛାଡ଼ି ନଥିଲେ । ତାଙ୍କର ପିତା ମହାଦେବ ବ୍ରହ୍ମା ବିଶ୍ୱାସ କରିଥିଲେ ଯେ ତାଙ୍କର ପୁତ୍ର ଜଣେ ଓକିଲ ହେବ । କିନ୍ତୁ ଆଚାର୍ଯ୍ୟ ହରିହରଙ୍କର ମନ ଓକିଲାତି କରିବାର ଆଡ଼କୁ ନଥିଲା । ଏଫ. ଏ ପାସ ପରେ ସେ ବି. ଏଲ୍ ପଢିଥିଲେ । ସେ କଟକରୁ ଯାଇଁ କଲିକତାରେ ଏହି ପାଠ ପଢ଼ି ପାରିଥିଲେ । ସେ ପାଠପଢ଼ା ଶେଷରେ ଆସି ପୁରୀ ଜିଲ୍ଲାସ୍କୁଲର ଶିକ୍ଷକ ହେଲେ । ଆସ୍ତେ ଆସ୍ତେ କିଛି ଦିନ ପରେ ସେହିଠାରେ ସହକାରୀ ହେଡ ମାଷ୍ଟର ଭାବରେ ରହିଲେ ।

୧୯୧୨ ମସିହା ହରିହର ଗ୍ଭଲିଲେ ସତ୍ୟବାଦିର ବକୁଳ ବନ ବିଦ୍ୟାଳୟକୁ ଉତ୍କଳମଣି, ଗୋପବନ୍ଧୁ ମିଶ୍ର, ନୀଳକଣ୍ଠ, ନବକିଶୋର, କୃପାସିନ୍ଧୁଙ୍କର ସହିତ ବକୁଳବନ ବିଦ୍ୟାଳୟ ଚଳାଇବାରେ ଲଗି ହୋଇଥିଲେ । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲ । ସେ ଯେଉଁ ସ୍କୁଲରେ ଥିଲେ ତାହା ଜାତୀୟ ସ୍କୁଲରେ ପରିଣତ ହୋଇ-ଥିଲ । ଏବଂ ସରକାର ସେହି ସ୍କୁଲଟିକୁ ବନ୍ଦ କରି ଦେଇ-ଥିଲେ । ତେଣୁ ସେହିଠାରୁ ହରିହରଙ୍କର ଶିକ୍ଷକତା ଲେପ ପାଇଥିଲ । ୧୯୩୦ ମସିହାରେ ହଜାରିବାଗ୍ ଜେଲରେ ମଧ୍ୟ ବନ୍ଦୀ ଜୀବନି ମାନଙ୍କୁ ପଢ଼ାଇବାର ସୁଯୋଗ ପାଇ-ଥିଲେ । ୧୯୪୨ ମସିହାରେ ଭରତଛାଡ଼ ଆନ୍ଦୋଳନ ହୋଇ ଥିଲ । ସେହି ଭରତଛାଡ ଆନ୍ଦୋଳନରେ ସେ ମଧ୍ୟ ଯୋଗ ଦେଇଥିଲେ । ତାଙ୍କୁ ମଧ୍ୟ ୧୯୪୨ ମସିହା ଅଗଷ୍ଟରେ ବ୍ରହ୍ମପୁର ଜେଲରେ ଆକଟ ବନ୍ଦୀ କରଗଲ । ସେ ମଧ୍ୟ ସେହି ଜେଲ୍‌ରେ ଦୁଇବର୍ଷ କାଳ କଟାଇ ଥିଲେ । ହରିହର ଯେଉଁଠାରେ ରହିଥିଲେ ମଧ୍ୟ ଶିକ୍ଷକତା ଛାଡ଼ି ପାରିନଥିଲେ ପ୍ରକୃତ ଅର୍ଥରେ ସେ ଜଣେ ସନ୍ନ୍ୟାସି । ୧୯୩୯ ମସିହାରେ ତାଙ୍କୁ ଷାଠିଏ ବର୍ଷ ପୁରି ଯାଇଥିଲ । ତାଙ୍କର ଜୟନ୍ତୀ ପାଳିବାକୁ ତାଙ୍କୁ ପାଞ୍ଚହଜାର ଟଙ୍କାର ଗୋଟିଏ ଥଳି ଭେଟି ଦିଆଯିବ ବୋଲି ଘୋଷଣା କରଗଲ ସେ ମଧ୍ୟ ଏଥିରେ ବିଚଳିତ ନହୋଇ ଯୁବକ ସମ୍ପାଦକ ମାନଙ୍କୁ ପ୍ରଶ୍ନ କରିଥିଲେ ଯେ– ମୁଁ ହିଁ ଥଳୀ ଭେଟି ନେବି ସେହି ଗରିବ ହରିଜନଙ୍କର ପାଇଁ ଖର୍ଚ୍ଚ କରିବା ଉଦ୍ଦେଶ୍ୟରେ ; ଅଭିନନ୍ଦନ ଗ୍ରନ୍ଥ ମୋର କଣ ହେବ । ଆଗ୍ରର୍ଯ୍ୟ ହରିହର ଲେକ ମାନଙ୍କୁ ଉପଦେଶ ଦେବା ପାଇଁ ସବୁବେଳେ କହୁଥିଲେ ଯେ "ଭଲ ମଣିଷ ହୁଅ" । ଏହାକୁ ମଧ୍ୟ ସେ ଲେକମାନଙ୍କୁ ବୁଝାଇ ଦେଇଥିଲେ ।

କିନ୍ତୁ ଭଗ୍ୟର ବିଡମ୍ବନା ଅନୁସାରେ ୧୯୭୧ ଫେବ୍ରୁ-ୟାରୀ ୧୯ ତାରିଖ ଥିଲ ତାଙ୍କର ଜୀବନର ଶେଷ ସମୟ । ଆଗ୍ରର୍ଯ୍ୟ ହରିହରଙ୍କର ଛାତିରେ କଫ ଗୁଡ଼ିକ ଜମିଯାଇଥିଲା ତେଣୁ ସେହିଦିନ ତାଙ୍କର ଶେଷ ନିଶ୍ୱାସ ଉଡ଼ିଯାଇଥିଲା । ତେଣୁ ଉତ୍କଳର ଗୋଟିଏ ଦ୍ୱୀପ ଲିଭିଗଲା ଦୁଃସ୍ଥ, ନିଷ୍ପେଶିତ ଦରିଦ୍ର ଓ ଆର୍ତ୍ତର ସେବାହିଁ ପ୍ରକୃତ ସେବା ବୋଲି ତାଙ୍କର ମୁଖରୁ ପ୍ରଣିତ ହୋଇଥିଲା "ସତ୍ୟହିଁ ଭଗବାନ" ଏହାର ପ୍ରକୃତ ଅର୍ଥ ସେ ବୁଝିଥିଲେ । ଏଣୁ ଏହି ବାଣିରୁ ତାଙ୍କର ଆତ୍ମା କାଳ କାଳକୁ ଜଗତକୁ ଜାଗ୍ରତ କରି ରଖିଥାଉ ।



# ମୋ ପ୍ରିୟ କଲେଜ

ପ୍ରଭାତ କୁମାର ଦାଶ
+ ୨ ଆର୍ଟ୍‌ସ

ଢାଉ ପାଶେ ମୋର କଲେଜଟାଏ
ସାତଟା ବେଳକୁ ଖୋଲଇ ସିଏ ।୧।

ସିମେଣ୍ଟ ଘରରେ ତିଆରି ସିଏ
ଦେଖିବାକୁ ଭରି ସୁନ୍ଦରଟାଏ ।୨।

ଝରକା କବାଟ ଅଛି ତାହାର
ଲଛନି ଭବରେ ରହିଛି ଘର ।୩।

ଘର ପାଶେ ପୁଣି ରାସ୍ତା ଟାଏ
ମଟର ଗାଡ଼ିର ଆବାଜ ହୁଏ ।୪।

ପଛ ପାଖେ ଛୋଟ ପଡ଼ିଆଟିଏ
ଖେଳନ୍ତି ପିଲାଏ ଠାଏକୁ ଠାଏ ।୫।

ଛୁଟି ହୋଇଯାଏ ଏଗାରଟା ବେଳେ
ହଲି ହଲି ଯାନ୍ତି ପିଲାଏ ଦଳେ ।୬।

ମନ ଦେଇ ପାଠ ପଢନ୍ତି ତହିଁ
ପାଆନ୍ତି ଫାଷ୍ଟକ୍ଲାସ୍ ତହିଁ ।୭।

ଆଚାର୍ଯ୍ୟ ହରିହର ନାଁ ତାହାର
ଅଟଇ ଭଲ ଏ କଲେଜ ମୋର ।୮।

× × × ×

ଯେବେ ଆସିଛନ୍ତି ଭୁବନେଶ୍ୱର (ଗୋନଘର) ପାଶ
ମନ ପାଇଲେ ଏ କଲେଜରେ ପସ
ନ ପାଇଲେ ମନ ଜଲ୍‌ଦି ଖସ
ଗୀତେ ଭଣିଲେ ଶ୍ରୀ ପ୍ରଭାତ ଦାଶ ।



# ମୋ ଜୀବନର ଚଲାପଥେ

ନାରାୟଣ ସାମଲ

ଜୀବନର ଚଲପଥେ
ଚାଲିବାକୁ ହେବ ମୋତେ
ଅବିରତ, ଏଇ ପଥମୋର
ସହଜେ ଯାଇଛି ଲମ୍ବି
ଅଙ୍କାବଙ୍କା ଖାଲଢିପ
ନୁହେଁ ସମତୁଲ
ଏ ପଥ ଯେ କଣ୍ଟକିତ
ବିପଦ ସଂକୁଳ
ଏଜୀବନ ଚଲପଥେ
ଦୁର୍ଗମ ଦୁସ୍ତର
ଏ ପଥରେ ଫୁଟେ ନାହିଁ ଫୁଲ
ଏପଥରେ ଥୁଆ ଖାଲି

କଣ୍ଟା ଅସୁମାର
ତେଣୁ ବନ୍ଧୁ ହୁସିଆର
ସାବଧାନେ ଚାଲ
ନହେଲେ ଫୁଟିବ କଣ୍ଟା
ପାଦେ ତୁମ ହେବ କଲବଲ
ଜୀବନର ଚଲପଥେ
ସୁଦୀର୍ଘ ବିସ୍ତୃତ
ଏ ପଥରେ ଚାଲିବାକୁ
ହେବ ଅବିରତ
ହାତରେ ସମୟ କମ୍
କାମଅଛି ବାକୀ
ସାରିବାକୁ ହେବ ଯେତେ

ନିର୍ଦ୍ଧାରିତ ଶେଷ ଘଣ୍ଟି
ବାଜିବା ଆଗରୁ ।
ମନ ମୋର ଅତିବ ଚଞ୍ଚଳ
ଚାଲିବାକୁ ହେବ ମୋତେ
ପଥ ବହୁଦୂର
ଏକେ ପ୍ରତିଜ୍ଞା ନିଶାରେ
ଚାଲିଯିବି ବହୁଦୂର
ମାତ୍ର ପଥ ଯେ......

କାରଣ ଚାଲିବାକୁ ହେବ
ପଥ ବହୁଦୂର
ପଥ ବହୁଦୂର
ତୁମେ ଚାଲିପାରିବ କି
ମୋ ହାତରେ ହାତବାନ୍ଧି
ମୋ ପାଦରେ ତାଳ ଦେଇ
ତେବେ କର ପ୍ରତିଜ୍ଞା



# ସ୍ମୃତି, ଏକ ଲସ୍ମୃତିର

ଶ୍ରୀ ଜିତେନ୍ଦ୍ର ପ୍ରସାଦ ପଣ୍ଡା
ଅଧ୍ୟାପକ

ସ୍ମୃତ ତୁମେ ବିଗତ ବିସ୍ମୃତ
କାଠି, କୁଟା କୁଡ଼ିଆ ଘରର ।
ସ୍ମୃତ, ତୁମେ ହଜିଲ ଦିନର
ସୁଖ, ଦୁଃଖ, ଭାତ ନୁଣ
ଓଡ଼ିଆ ଘରର ।।
ସ୍ମୃତ, ତୁମେ କେତେ ବସନ୍ତର
ପଲ୍ଲୀବଧୂ; ଧୂଳିଘର,
ପତର କୁଂଜର ।
ସ୍ମୃତ, ତୁମେ ଅସଂଖ୍ୟ ମନର
କାନ୍ଦୁଥିବା ନିଧିବୁଢ଼ା
ଆଉ ଶଂଖା ଭଙ୍ଗା ହାତ ଦୁଇଟାର
ଅନ୍ନଂ ଦେହୀ କେତେ ପ୍ରେତାତ୍ମାର ।।
ସ୍ମୃତ, ତୁମେ ବନ୍ୟାକ୍ଲିଷ୍ଟ ଛୁଆଟି ଲୁହର
ଦଗ୍ଧ ପ୍ରାଣ ବୁଡ଼ନ୍ତି ମନର
ସାଉଁଟି ଖାଉଥିବା ଅନାଥ ଛୁଆର
ସ୍ମୃତ, ତୁମେ ଉତ୍କଳ କନ୍ୟାର
କଳିଂଗାର କଳା, ଐତିହ୍ୟର
ଶିକ୍ଷା, ଭାଷା, ଧର୍ମ ଆଉ ବିଧର୍ମୀ ଜାତିର ।।
ସ୍ମୃତ, ତୁମେ ନେତା ଓ ନେତ୍ରୀର
ପରାଧୀନ, ପର କ୍ଲିଷ୍ଟ
ଝୁମ୍ପୁଡ଼ି ଘରର ।।

ଆଜି ସବୁ ସ୍ତବ୍ଧ, ସ୍ତବ୍ଧ ହୁଏ ପଥଚାରୀ
ଉତ୍କଳର ମହୋଦଧି;
ମହାନଦୀ ନେଳିଆ ତରଂଗ ।।
ଆଉ ଆକାଶର ଘୁମନ୍ତ ବିହଂଗ
ଉତ୍କଳର ବଡ଼ଦାଣ୍ଡେ ଚାଲୁନାହିଁ
ନନ୍ଦି ଘୋଷ ରଥ ।
ଅସହାୟ ପକ୍ଷୀର ଡେଣାରୁ
ଖସିଥିବା ଶେଷ ପରଟି ପରି
ହଇଜାରେ ବସନ୍ତରେ; ଅନାହାରେ
ଚାଲେ ଶବ ଶୋଭଯାତ୍ରା ।।
କିନ୍ତୁ, କାନ୍ଦୁନାହିଁ ଆଜିର ଜନତା ।
କିଏ ଲୁହ ପୋଛିଦେବ ।।
କୋଳକରି ବୋକ ଦେବ
ଗଣ୍ଡତଳ ଅଶ୍ରୁ ଛ ମନକୁ
କିଏ ଗେଲ କରିଦେବ; ଅନାହୁତେ
ପହଞ୍ଚିବ, ସାଉଁଳେଇ ଟୋକିନେବ
ନିଜ ବାହୁଯୁଗଳକୁ ।।
ହେ ! ସ୍ମୃତ ଆହେ ଜ୍ୟୋତି
ତ୍ୟାଗପୂତ ପ୍ରଚଣ୍ଡ ପ୍ରତିଭା
ତୁମେ ମୋର ପୂଜାଫୁଲ ଏ ମାଟିର ଅମୃତ ଝରଣା
ମୁଁ ତୁମକୁ ଆରାଧନା କରେ ।।



# INDIA, A FRACTURED SOCIETY

**Makaradhar Mishra**
Lecturer

My dear Lucy,

With best and warm wishes I want to make you hear of something extraordinary that is apparantly expected to bring fruitful results to you. You might have been hurried to get up to see the twinkling star in the bluish sky. The very nerve of your body would have fou:ced you to find at worldly light. But Minister's clock just strikes two. The dawn is so away from you. That you shouldn't be worried to keep it in your grip. You do anticipate wind blowing out side will pour the source of curiosity and enthusiastic in to you to have a new start. The air what you wish to aspire gets no doubt audalterated through gradual and persistant process. To the last part of darkness, the storm is sure to set in, holding treacherous wesapon to gun down your sweet heart as well the very hope of success.

We the men living in all around hypocracy, So to say. I mean your un coming society is with reckless destruction and massive consipiracy. That fraternal bonds and integrity of your motherland is now being shartted and fractured. Your cherished India is having a sorrow pass. The very pages of history has been partly or wholly blotted out. The hope of success is not the character, but the money. The teaching of Gandhi, Vivekananda and the philosophy of Tagor is being here heard without any proper execution. The pride of Gopabandhu, Achary Harihar and of countless sages are sounded fruitlessly. As to you, those who are counted as the supermen are no more. Their efforts and endeavours have been well arrasted, the thought and the philosophy are shut in cell. The delibirate conception, self satisfaction and unequal Judgement have been the basis of our society. Although we are heading to words 21st Century supposed to be good and sound, but narrowness as to suspends all our hopes and out looks. You must expect equity and equivocal distribution of wealth and income from the guide of society. But

you are not correct to say so. In real terms we are visualising that the some sections in the community are rolled in the sun shine of laxury whereas other major fractions are roaming hether and thether is the empty-stomach in the midst of 21st Century. There is the contraction and cruelity galore. We are sleeping in such a bed that has been hard heartening despite of all comforts. We are living in such a social structure, which will exhibit you the reverse attitude, the discountentment and the fatalism. You can't bear up seeing your sister tortured in broad day light. Once you are Physically prepared to struggle, you would be sternly gun down.

Above all, I don't like to show the dark side of the society, but as I would be no more with you as I have made my mind to make you make out the real problems a-head of you. Before my Colossal Collapse, I want to pass an wisdom that I have acquired in my life. Unto last, from the core of my heart. I cordially request you not to enter in to such a regressive society. I opined, you ought not leap so early. Please sleep sound for limitless time as the time that suits you is not to day. But the day after tomorrow.

Yours

Well wisher.



# A TEACHER IN DISGUISE

Sri Mihir Kumar Mishra
*Lecturer*

Persons unfit for other jobs take to teaching like rejected lovers who take to roaming as unhived bees. It is not my view. but one which is endorsed by all most all. Gone are those days when the best scholars of the Universities were giving the profession their first preference but today, it has become the last choice. The reasons are many and it will be out of place for me to probe in to it, as I like to point out the thrill of challenges that this profession offers, particularly to the persons like me. Of course I am not one among the best scholars of my university.

Anyway choice differs and everybody has his own reason of choosing one in preference to the other. But so far as I am concerned, I want to take the profession not by chance but by choice, It may be a fact that I am born to a teacher and as the saying goes.........."A teacher's son always tends to be a teacher as a doctor's son tends to be a doctor. My father who retired after 35 years of his service as a teacher has a strong hold on me but he has never inspired me to aspire for such a job rather he uses to narrate the hazzards of the profession and describe his present suffering to his profession. He has served as a classical teacher for over 35 long years with silvery hairs on his head down to the dull decripitude and in return has been rewarded with some chronic diseases like heart disease and cholic alongwith a scanty pension. It is not the case with my father only, but I have come accross so many teachers who do not like to see their children as educators. In this context I remember that I was at one time the tutor of a teacher's daughter who happened to be a student of my college. The gentleman is serving as a teacher in D, M. School with a handsome salary and teachership in D. M. School is rather more alluring in comparison to similar types of jobs in other schools. But to my dismay I found that he was advising me not to take teaching as a carrer. Again

looking over the past, I recollect those childhood days when I was a student of 7th Class in my village Minor School. My Headmaster Mr. Purna Ch, Muduli who is a dedicated teacher, once asked me about my aim in life. I opted for teachership but my teacher did not approve of it. Of course my liking for the profession is due to him and I still bow down my head in reverence while mentioning his name. He is really a raw material of a divinity and is one among such teachers who occupy an unique seat in the hearts of his students.

Again I know from my experience of being born to a teacher that a teacher leads a simple life and is always modest in his ways, plain living and high thinking is the motto of a teacher's life. Perhaps this is the reason for developing a likeness for the profession and only for that I use to spend my leisure hours as a teacher in a college though I am engaged elsewhere It is not for earning money by putting some extra labour but for giving vent to my suppressed desire and a frustrated hope. I sincerely wish to be a teacher though my luck does not like to see me in that professoin and I fervently hope to take up this profession for the rest of my life Inspite of all it's hazzards. Moving in the narrow lane of my memory I recollect the thrill of challenges that this profession had once offered me and each time it seems to be so various and so new.

Inspite of all these, I want to focus on some unpleasant experience, though not of mine but of a general nature and shared by most of the teachers today for which they are developing a kind of disliking for the profession. Of course a reverse trend is seen now-a-days and it is pertinent in all walks of life. There is no such relationship between the teachers and the students and today the students feel that a teacher and a drum are only meant for beating. Reports of teachers apologizing to their students after being insulted, manhandled and pelted with stones are found even on the pages of newspapers. All sense of respect are gone with the wind and all ideas have come to be dismissed as idle dreams. Morality and idealism have become dirty words. Anyway I do not blame the students alone because they are young and immature and can be easily persuaded and baised. It is the present day society which has brutalised everything to an

alarming extent. Evil has come to be accepted as inevitable, as natural. as a mere common place. The atmosphere has been polluted and due to the interference of those hostile forces our educational institutoions have become the breeding ground of corruption and indiscipline, dishonesty and irresponsibility, Anyway I am nobody and in a sense have got no right to discuss it as there is the possibility of being manhandled not by my students but by persons best know to the society. So such type of harrasment creates disliking for the profession which really involves greater risks no-a-days in comparison to other jobs. Many of my friends observing my attachment for the profession have also predicted like eminent astrologers that my liking for the same would last till I have not borne the burnt of it. Ofcourse I have not yet faced such unpleasant situation and hope it will not occur in future. During those four years for which I have come in contact with the students, it is needless to say that I have been impressed to a great extent. All students are not equal and we can not expect the same type of behaviour from all. I still look forward to see a change in this trend and hope that there will be a change. I can even easily get used to it as I like the students as much as I like the profession. It should not be, far heaven sake, taken as an exageration or my weakness but only an expression of my warm personal, intimate, cordial and passionate experience. I still remember the students of my college like Manoranjan, Debesh, Laxmipriya and Avay of 1984-85 batch. Japi, Rina, Sabita and Subash Sahoo (85-86), Ramesh, Sujit, Ali, Santosh, Pradeep. Nivedita and Harichandan of 1986-87 batch. They all were not good at their studies but some of them certainly were for which I have remembered one and all though all the names can not be mentioned. It is equally important to note that in my college the number of students were much less in comparison to other colleges and we had a personal contact with them They may forget their roll numbers, in the long run but I would not. For a teacher the students are mere buds waiting for proper atmosphere to blossom. A teacher is a guide, a friend and a philospher to the students and the students are the chief source of inspiration for a teacher. Thus teachicg is a co-operative endeavour involving both the students and the teachers, Whether they be boys or girls all are equal before our eyes though there is marked

difference in their temperament and behaviour. Above all it give an unmatched satisfaction to work among the younger generation. The boys though sometimes troublesome are indispensable for the class and girls with their tender sentiment coupled with high sensitivity are delicate things to handle with. Just pretend to be angry or just change your tone it is enough for them while the boys are always indifferent and their indifference at times throws the teacher out of the track. There is really a secret satisfaction in this merry-go-round. Thus these experiences can hadly be shared in any other profession. I remember Thomas Hardy, an English Novelist who says, "A present moment of comfortable reality is worth a decade of memories '. So those who are still in the profession, I think, have not made a bad bargain with life. Thos who have cynically devoted themselves to it may not find it congenial and should give it up because, to stick to a profession without realising the subtle beauties, the thrilling excitement is like wedding a foreigner without learning her tongue.

Besides the facts mentioned above, there are other sides which allure me. Instead of going far ahead of my topic I should rather touch some of those points as to what lead me to be a teacher in disguise. Shortly speaking I should now insist on the merits of teaching as a career.

Teaching as a carrer is impressive without showiness, majestic without severity and grand in its simplicity. The teacher brings the best out of the human being for his good and for the good of others. Therefore it is not wrong to say that nature made the human being and human being made the man. That is the man we all of us are. A teacher develops the crude form of a human being in to a man. That is how he becomes the most revered one in society and the profession itself is looked upon as noble. The supereority of teaching aming the professions that are being followed by the people for their survival, maintenance of living and advancing in it can be easily established. As we know there are precious stones in the form of diamonds, rubies, emeralds, saphires, opals, pearls discovered by man from underneath the sea. So long these objects lie at the bottom of the sea or covered underneath the earth they are worthless entities. But once

they are given a proper shape and shine, the whole world is charmed with their glow and worth. It is the skill of the diamond cutter/polisher who turns the rugged stone in to a precious jewel for all to watch curiously. Similarly a teacher turns a rawman in to a perfeect man worth his name and the pride of the country. That makes the profession of teaching a noble one.

All professional like doctors, engineers, adminstrators, scientists and others including the teachers are created hewe and polished by the teaching community —the proud product. It is certainly a rare experience and rewarding one to work among human beings and to shape and mould their mental and entellectual growth rather than with inanimate objects as is the case with other professions. It is an unmatched satisfaction that the profession of teaching earns when it is able to contribute to the process of making man capable of facing the most difficult problems and mysteries of life, opening floodgates of knowledge, turning it again to his own use. From this can the potential of a teacher and his profession easily he ascertained. As I have pointedout earlier that it is really a rare occassion to remain youthful since the teachers work among the young.

The largest profession which offers employment opportunities to young people is the teaching profession only. Out of 22 million people that are employed in the organised sectors, 3. 4 million are in the field of education which comes to approximately 16 percent in 1986. Employment in the profession certainly could have been more, had all the children of school going age got into schools at least those up to the age group of 14 who are to be educated compulsorly as per the Directive principles enshrined in our constitution.

It may be too simplistic to describe the duties of a teacher. Any body can very readily answer that teaehcr teach students. It is true but besides teaching, teachers have to undertake other activities too. Normally a teacher performs duties like alloting, collecting and checking home works of students conduct and demonstrate expriments. evaluats periodic performances of the students through tests. conduct annual examination, evaluate answer sheets and help in declaring the final results besides their main job that is

teaching. They also guide students about their academic, social and personal problems in groups or on individual basis.

There are special functions attached to each particular category of teachers. In kindergarden nursery schools. care is on developing good manners and etiduette in the future citizens of the country. Such personal attention is needed because of the tender age of the students. These teachers assume responsibility to encourage students for constructive/creative activities like simple health habits. They offer oppertunities to develop latent capacbilities through organising extra curricular activities such as sports meets, hobby clubs, dramatics, science clubs, debating competitions and many more other activities. Habits that have been formed early in age get consolidated in tender minds which become useful in leading a meaningful life in future. Looking at this important aspects it is the onerous and responsible task that the teachers are to perform. They truely prepare the future citizens of the country.

To me there are in fact certain pre-requisities to become a teacher. A primary trait quite in demand for this profession is to have teaching ability. Alongwith it comes fluency in the language. Since a teacher deals with students with varying levels of intellegence, he himself should be of above average intellegence. He must have a liking for studies and learning new things and techniques. To be an ideal to young generation, the teacher should be self-disciplined and should have high moral standards. He should be emotionally stable to develop rapport, understand compicated problems of students and appreciate them . A sense of humour and fair-play, adaptabillity etc, are the assets of a teacher. However along with all these qualities the teacher must have a thourough knowledge of his subject that he teacher to his students. No doubt, success in the teaching profession depends very much on personal qualities of a teacher A teacher should know that it is essential for the student to acquire an understanding of and a lively feeling for values. He must acquire a vivid sense of the beautiful and of the morally good. Otherwise he—with his specialised knowledge, more closely resembles a well—trained dog than a harmoniously developed person. To quote the veteran jurist Mr. Palkhivala, "Education involves cultivation of the mind, not morely with a view to offering it as commodity for sale in the market place".

Before concluding I must say that teaching is the only profession

in which a confluence of three important things is seen. It is through this profession that the mental physical and social developments of a child is achieved. Schools and colleges through their efforts bring out such citizens who contribute their mite for the alround development and progress of the country. Will it not, therefore be quite an honourable job to become a teacher ? This is for which I am prepared to give up my present job if chance and time permits me to get into the professon of my choice. I am really fortunate enough to devote some time in an educational Institution as an honorary teacher in English, which is named after a great sage and a teacher, the pioneer of Satyabadi Vana vidyalaya, Acharya Harihar. I am in a sense a teacher in disguise and the reason is best known to my students who are my life and soul. My life will be meaningful only for them and I to-day feel iike Prof. Derazio who said."

"Expanding like petals
of young flowers
I watch the gentle
opening of your mind,
I feel I have not
lived in vain."

(Dedicadted to my dear students)



❀ ସୌମେନ୍ଦ୍ର ଜେନା

॥ ୧ ॥ ସତ୍ୟବାଦୀ କୁଞ୍ଜତଳେ
ପଞ୍ଚସଖା ସଙ୍ଗ ମେଳେ
ଜାତୀୟତାର ମାନ୍ତ୍ରିକ
ନବଜାଗୃତି ତାନ୍ତ୍ରିକ
ଶୋଇଛ ସିନା ଶାନ୍ତରେ ।

ଚକ୍ଷୁ ଫେଣ୍ଡ଼ ମାନ ଥରେ
ସିକ୍ତପତା ଅଶ୍ରୁଝରେ
ତମିସ୍ରାର ବନ୍ଧନୀରେ
ଜନତା ଧାଏଁ ଭ୍ରାନ୍ତିରେ ॥

ରୁଦ୍ଧ ଏଠିମାର୍ଗ ଯେତେ
ତାଲିମ ନଥା ଜାଲିମ ହାତେ
କ୍ଷିପ୍ତ ଯାହା ରକ୍ତପାୟୀ
ନୃଙ୍କ ଉଦ୍ଧ-ଅମିନ୍-ସାକ୍ଷୀ
ବୁଲେଟ୍ ରଣ-ସଙ୍ଗୀତ
ସ୍ୱାତନ୍ତ୍ର୍ୟର ଛିନ୍ନ ଆଶା
ଅହଲ୍ୟାର ମୌନ ଭାଷା
ଫୁଲ୍ଲଜ୍ୟୋସ୍ନାର ଇଙ୍ଗିତ ।
ତୁମର ନାମେ ଦିବସ ଯାମେ
ପବନ ତୋଳେ ସୁର,
କବିତା ନୁହେଁ ପଢ଼ିବ ଏ
ଦେଖ ହେ ହରିହର ॥

॥ ୨ ॥ ବ୍ରହ୍ମାର ହେ ବଂଶଧର
ଈଶ୍ୱରର ଅଂଶଧର
ସତ୍ୟଶିବ ସୁନ୍ଦରର
ମୂର୍ତ୍ତି ଜନସେବୀ
ଉତ୍କଳର ଖ୍ରୀଷ୍ଟସମ
ଆଶ୍ଚର୍ଯ୍ୟ ହେ ! ଋଷି ପ୍ରତିମ
ଦିବ୍ୟ ଅନୁଭବ,
ତୁମରି ନାମ ସଂକୀର୍ତ୍ତନେ
ପ୍ରଜ୍ଞାଦୀପ୍ତ କୀର୍ତ୍ତିମାନେ
ବକ୍ଷେର ଶଶିରବି
ହଜିଲାଗତ ଗୌରବର
ଖୋଜିଲ ସବୁ ସୌରଭର
ଆଙ୍କେ ଯାହା ଛବି
ଦୀନ ଏ ଗ୍ରନ୍ଥ କବି ।

ପ୍ରଣତ ଦେବ ଗୁରୁ
ଏ ଜାତିର ଅଗ୍ରଗତି-
ପଥରୁ ହଟୁ ଅନ୍ଧରାତି
ଯାତ୍ରା ପଥେ-
ପ୍ରତିଟି ନବ ଚରଣପାତେ
ସ୍ୱର୍ଗପୁରୁ-
ଆଶୀର୍ବାଦ ମନ୍ଦାକିନୀ
ତାହାର ଲାଗି ଝରୁ ॥

—o—

ଏ/୮, ଖାରବେଳ ନଗର
ୟୁନିଟ୍-୩, ଭୁବନେଶ୍ୱର-୭୫୧୦୦୧

# ॥ ସତ୍ୟବାଦୀ-ବଶିଷ୍ଠ ସ୍ମରଣେ... ॥

✻ ଅବିନାଶ ଆଚାର୍ଯ୍ୟ

ସତ୍ୟବାଦୀ-ସତ୍ୟପୁରୁଷ
ହେ ଅନିକେତ !
ସତ୍ୟ-ପୂଜାରୀ, ସତ୍ୟଶୀଳ, ସତ୍ୟାର୍ଥୀ
ଶୁଭ୍ର-ସନ୍ନ୍ୟାସୀ-ଅହେ ସରହର !
ଘେନ ଏ ଅକିଞ୍ଚନର
ଭକ୍ତିପୂତ ପ୍ରଣାମ !

✻

ତୁମେ ନ ଥିଲ—କାପୁରୁଷ ଅବା ଭୀରୁ
ତୁମେ ବି ନ ଥିଲ—ହୋମ, ଯଜ୍ଞେ/ଦୁରାହୁତ ସେବା-ଭଣ୍ଡ ସନ୍ନ୍ୟାସୀ
ତୁମେ ତ ନ ଥିଲ—ସ୍ୱାର୍ଥାନ୍ୱେଷୀ, ଅହଂକାରୀ ପୁରୁଷ
ତୁମେ ଥିଲ—ସତ୍ୟବାଦୀର ସତ୍ୟସନ୍ଧ ଯୁଗାଗ୍ରଣୀ
ତୁମେ ବି ଥିଲ—କର୍ମ ଯଜ୍ଞେ/ଆତ୍ମାହୁତ ସେବା ମଣିଷ
ତୁମେ ତ ଥିଲ—ତୃଣଠୁଁ ନୀଚ/ବୃକ୍ଷଠୁଁ ସହିଷ୍ଣୁ ପୁରୁଷ !

✻

ତୁମର ତପସ୍ୟା—ଜନସେବା
ତୁମର ଯଜ୍ଞ—ସୃଜି ଯଜ୍ଞ
ତୁମର ଆରାଧ୍ୟ ଦେବ—ସତ୍ୟ ଓ
ତୁମର ମୋହନ ମନ୍ତ୍ର—ସଦା ଶାନ୍ତି ଉପାସନା
କଦାପି ସ୍ୱପ୍ନରେ ସୁଦ୍ଧା ଦେଖିତ ନ ଥିଲ
ଧନ, ମାନ, ମନରେ ବଡ଼ ହେବାର ବୃଥା ମୋହ
ମାନବିକତାର ବେଦ ମନ୍ତ୍ର ଜପି ଜପି
ତଳର ତଳକୁ ଓ ଉପରର ଉପରକୁ
ଚୁମ୍ବନ ଦେଇଥିଲ ହେ ସନ୍ତ୍ରତ ସନ୍ନ୍ୟାସୀ, ଶୁଭ୍ରକେଶୀ
ସ୍ମୃତି ମନ୍ଦିରର ଆରାଧ୍ୟ ଦେବ
ପକ୍ୱ ଶ୍ମଶ୍ରୁଧାରୀ ବଶିଷ୍ଠ ଋଷି
ସବୁରି ଦୁଃଖ ନିରସନ କରି କରି
ତୁମେ ବନିଗଲ ଶେଷ ଦୁଃଖିଟିଏ

✼

ସତ୍ୟବାଦୀଯୁଗଚେତନାରେ ମଣ୍ଡି ,ହଣ୍ଡି
ସେବାକୁ ପରମ ପାଥେୟ କରି
ଗୋପବନ୍ଧୁ ହେଲେ—ଜନପ୍ରାଣ ନେତା
ନୀଳକଣ୍ଠ—ଜ୍ଞାନୀ, ପଣ୍ଡିତ ଓ ସାହିତ୍ୟିକ/
କୃପାସିନ୍ଧୁ —ଅନୁସନ୍ଧିତ୍ସୁ ଐତିହାସିକ/ଆଉ ତୁମେ, ଜନସେବା କରିକରି ହୋଇଗଲ/ଶ୍ରେଷ୍ଠ ଜନସେବକ

✼

ତୁମେ ତ/ଦୟା, କ୍ଷମା, ତିତିକ୍ଷା, କରୁଣାର ବାରିନିଧି/ପୁଣି, ଗୋପବନ୍ଧୁଙ୍କ ଶ୍ରେଷ୍ଠଶିଷ୍ୟ ।
ଶ୍ରୀମନ୍ଦିର ଗୃହକଡ଼ର ଝଣ୍ଟି ଆଖପାଖର ଦୀନଦୁଃଖୀ/ଦୁଃଖରେ ବି ସଦା ତୁମର ଅନ୍ତରରେ କୋହର ଢେଉ ଲହଡ଼ି ଭଙ୍ଗେ
ଆଖିରୁ ଝରେ, ଲୋତକର ପାରାବାର/ଆଉ ମନରୁ ବେଦନର ମେଘନାଦ ଉଠେ

✼

ତୁମେ,ଚନ୍ଦ୍ରାର ଜାଗ୍ରତ ପ୍ରହରୀ
ନିର୍ଗୁଣ ସଦାଯୁକ୍ତସୁପୁରୁଷ
ଏ ଜାତିର ଦ୍ରୋଣାଗ୍ରଣୀ ।

ତୁମେ ତ ଗୌରବ, ଏ ଜାତିର ମହିମାମଣ୍ଡିତା, ଶୃଙ୍ଖଳିତା ଭାରତର ବନ୍ଦନା ଗୀତ,
ସତ୍ୟାନୁସନ୍ଧାନେ ଆମର ସଂଗ୍ରାମ/ବଳିଦାନପରେ ଆମର ବିଶ୍ରାମ ।

✼

ଏ ଜାତି ସହ ତୁମର ସ୍ମରଣେ/ବିତୁ ମୋ ପାର୍ଥିବ ଜୀବନ
ତୁମେ ସଦା ଦେଉଥାଅ ଏ ଅଭାଗା ଜାତିକୁ,
ବଞ୍ଚିବାର ଗାୟତ୍ରୀ, ଭାଷିବାର (ହୃଦୟଭରା) ଭାଷା
ଲଢ଼ିବାର ଉଦ୍ଦାମ ସାହାସ, ଜିତିବାର ଅକାତ ସ୍ପୃହା

ହେ ଆଗ୍ରଣୀ ହରିହର/ତୁମେ ଯଶସ୍ୱୀର ବାନା ବାନ୍ଧିଥାଅ
ତୁମେ ହିଁ ଶିକ୍ଷା-ମନ୍ଦିରରଶ୍ରେଷ୍ଠ ପୂଜକ/ତୁମେହିଁ ଏକ ବର୍ତ୍ତିମାନ ଜ୍ଞାନ-ପ୍ରଦୀପ
ତୁମେ ଏ ଜାତିର ଶ୍ରୀମନ୍ଦିରର ଦଧିନଉତିର ଦୃଢ଼ସ୍ଥାତା/ତୁମେ ତ ଗାଇଛ ପ୍ରଜ୍ଞାର ଜୟଗୀତ
ତୁମର ବିହୁନେ ଏ ଜାତି ଆଜି ନପୁଂସକ ପ୍ରାୟେ/ତୁମେ ମରି ବି ଆଜି ସୁଦ୍ଧା ଅବିନଶ୍ୱର ॥

—o—

ଇଷ୍ଟର୍ଣ୍ଣମିଡ଼ିଆ ଲିମିଟେଡ୍, 'ସମ୍ବାଦ' କାର୍ଯ୍ୟାଳୟ
ଏ/୭୨, ନୁଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

# ଧନଠାରୁ ମଣିଷ ବଡ

ପ୍ରଭାକର ମତ୍ତଗଜସିଂହ

ସଂସାରରେ ମନୁଷ୍ୟ ଏକ ଶ୍ରେଷ୍ଠ ସାମାଜିକ ପ୍ରାଣୀ । ଅନ୍ୟ ଜୀବମାନଙ୍କର ସାଧାରଣତଃ ଜନ୍ମଠାରୁ ଶାରୀରିକ ଅଭିବୃଦ୍ଧି ହୋଇଥାଏ, ମାତ୍ର ମନୁଷ୍ୟର ଜନ୍ମଠାରୁ ତିନୋଟି ଅଭ୍ୟୁଦୟ ପ୍ରତି ଲକ୍ଷ୍ୟ କରାଯାଏ ଯଥା- ଶାରୀରିକ, ମାନସିକ ଓ ବୌଦ୍ଧିକ । ଏହି ବିକାଶ କ୍ଷେତ୍ରରେ କେତେକ ସଂସ୍କାରଗତ ପରିପ୍ରକାଶ ପାଇଁ ଆମ୍ଭେମାନେ ମହାପୁରୁଷ, ସାଧୁମାନଙ୍କ ଜୀବନୀ ପାଠ କରୁ । ପ୍ରତ୍ୟକ୍ଷ ଭାବରେ ସେମାନଙ୍କର ସମ୍ଭାଷଣ ବ୍ୟକ୍ତିର ବହୁ ସଂସ୍କାର ତଥା ମାନସିକ ଅଭିବୃଦ୍ଧି ଆଣିଦିଏ । ସେହିପରି କେତେକ ମହାନ୍ ସଂକଳ୍ପକୁ କାର୍ଯ୍ୟକାରୀ କରିବାର ପ୍ରେରଣା, ସଦ୍‌ଭାବନା ପ୍ରଦାନ ନିମିତ୍ତ ସମାଜରେ ମହାନ୍ ବ୍ୟକ୍ତିତ୍ୱର ଆବଶ୍ୟକତା ରହିଥାଏ । ଏହାର ଦୃଷ୍ଟାନ୍ତ ଆଜିର ସମାଜରେ ସେତେ ପ୍ରଭାବଶାଳୀ ନ ହେଲେ ମଧ୍ୟ ବିଗତ ଦଶନ୍ଧିର ଏକ ବଦ୍ଧମୂଳ ଧାରଣା ଏବଂ ପ୍ରମାଣ ଯୋଗ୍ୟ । ଏହି ପ୍ରସଙ୍ଗରେ ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କ ସହ ଅଧୀନର ସାହଚର୍ଯ୍ୟ ଏବଂ ତାଙ୍କ ସତ୍ୟ ସନ୍ଦର୍ଶନର ପ୍ରଭାବ କିଭଳି ମରୁଭୂମିରେ ଉଦ୍ୟାନ ସୃଷ୍ଟି କରିଛି ତାର ଅବତାରଣା କରାଯାଉ ।

୧୯୬୫ ମସିହା, ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରଠାରୁ ଜଟଣୀ ରାସ୍ତାରେ ଦଶ କିଲୋମିଟର ଦୂର । ନୂତନ ଭାବରେ ଅବସ୍ଥାପିତ ଛୋଟ ପଡ଼ା ଗାଁ, ନାଁ ମତ୍ତଗଜ ପାଟଣା । ଚାରିପାଖରେ ଛୋଟ ବଡ଼ ଆହୁରି ଅନେକ ଗାଁ, ଶିକ୍ଷାର ବ୍ୟବସ୍ଥା ନାହିଁ, କାଁ ଭାଁ ପ୍ରାଇମେରୀ ସ୍କୁଲ । ନିମ୍ନ ମାଧ୍ୟମିକ ସ୍କୁଲ କହିଲେ କୁଦିଆରୀ ଏବଂ ଉଚ୍ଚମଧ୍ୟ ବିଦ୍ୟାପୀଠ ଭୁବନେଶ୍ୱର । ବହୁ ବ୍ୟକ୍ତିଙ୍କ ଆବଶ୍ୟକତା ଓ ଦାବୀ କ୍ରମେ ଏକ ବୈଠକ ଡ଼କାଯାଇ ଝିଅ ଓ ପୁଅମାନଙ୍କ ପାଠ ପଢ଼ା ନିମିତ୍ତ ଏକ ମଧ୍ୟ ଇଂରାଜୀ ସ୍କୁଲ, କେନ୍ଦ୍ରସ୍ଥଳ ମତ୍ତଗଜପାଟଣାରେ ହେବାପାଇଁ **ନିଷ୍ପତ୍ତି** ନିଆଗଲା, କାରଣ ପାହାଡ଼ ପର୍ବତ ଘେରା ସମତଳ ଭୂମି, ପାଖରେ ଝରଣାଟିଏ ବହିଯାଇଛି । ଏହା ଉପଯୁକ୍ତ ସ୍ଥାନ ବୋଲି ସର୍ବସାଧାରଣରେ ସ୍ଥିର ହେଲା, ଏହି କମିଟିର ସଭାପତି ଦାୟିତ୍ୱ ଅଧୀନକୁ ଦିଆଗଲା, ବିଦ୍ୟାଳୟ ଗୃହର ଭିତ୍ତି ପ୍ରସ୍ତର ସ୍ଥାପନ ପାଇଁ ଶୁଭଦିନ ଓ ବ୍ୟକ୍ତି ଠିକ୍ କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥାଏ । ଏଭଳି ଏକ ଗୁରୁ ଦାୟିତ୍ୱ ମୋ ଉପରେ । ରାତିରେ ନିଦ ହେଉ ନାହିଁ, ଶୁଭ ଦେବା ବ୍ୟକ୍ତି କିଏ, ସେ ସମୟରେ ବହୁ ଠିକାଦାର ଓ ମାରୱାଡ଼ି ଦାତା ଥା'ନ୍ତି, ପ୍ରତିଶ୍ରୁତି ମଧ୍ୟ ଥିଲା, ମାତ୍ର ଶୁଭ ଦେବା ବ୍ୟକ୍ତି କିଏ, ଏହା ସ୍ଥିର କରି ପାରିଲି ନାହିଁ । ନିକଟରେ ଜଟଣୀରେ ଏକ ସାଧାରଣ ସଭାର ଆୟୋଜନ ଥିଲା, ମନ୍ତ୍ରୀ ଆସିବାର ବ୍ୟବସ୍ଥା ଥାଏ । ମୋର ମଧ୍ୟ ଯିବାର ବ୍ୟବସ୍ଥା ଥାଏ । ବହୁ ବନ୍ଧୁଙ୍କ ସହିତ ସେଠାରେ ଦେଖାହେଲା । ଦୁଃଖ ସୁଖ ହେଲୁ । ପ୍ରସଙ୍ଗ କ୍ରମେ ପ୍ରସ୍ତାବିତ ବିଦ୍ୟାଳୟଟିର ଶୁଭ ଶିଳାନ୍ୟାସ ବିଷୟରେ ଆଲୋଚନା ହେଲା । ଆଲୋଚନା ଶେଷରେ ଶ୍ରୀମତୀ କୃଷ୍ଣବଲ୍ଲଭୀ ରଥ (ସମାଜ ମଙ୍ଗଳ ବୋର୍ଡ ଅଧକ୍ଷା) କହିଲେ, "ପ୍ରଭାକର ବାବୁ ମଙ୍କଚକା ପଛରେ ଯାଆନ୍ତୁ ନାହିଁ । ଏ ସବୁ କାର୍ଯ୍ୟ ମନ୍ତ୍ରୀଙ୍କ ଅପେକ୍ଷା ଜଣେ ସାଧୁସନ୍ଥଙ୍କ ଆଶୀର୍ବାଦରେ ଶୀଘ୍ର ପୂର୍ଣ୍ଣାଙ୍ଗ ହେବ । ବରଂ ମୁଁ ପ୍ରସ୍ତାବ ଦେଉଛି ଆପଣ ଆଚାର୍ଯ୍ୟ ହରିହର ଦାଶଙ୍କୁ ଭିତ୍ତି ପ୍ରସ୍ତର ସ୍ଥାପନ କରିବାକୁ ଆଣନ୍ତୁ । ମୋର ବିଶ୍ୱାସ ତାଙ୍କ ସ୍ପର୍ଶରେ ମାଟି ସୁନା ପାଲଟି ଯିବ । ପ୍ରସ୍ତାବଟି ସମସ୍ତଙ୍କ ମନକୁ ଛୁଇଁଲା ।"

"ଶ୍ରେୟ ପ୍ରେମ୍"। ସେହି ଅବେଳ ଦୂର ବାଟ ଭେଦନରେ ପହଞ୍ଚିଲୁ। କୃଷ୍ଣ ବଲ୍ଲଭୀ ଯାଉଥାନ୍ତି। ଅଗ୍ରର୍ଯ୍ୟ ମହାଶୟଙ୍କ ସାକ୍ଷାତ ହେଲା। ସାକ୍ଷାତରେ ସେ ମହାଶୟ କହିଲେ, "ମୋର ଯିବାର ଆପତ୍ତି ନାହିଁ। ମାତ୍ର ଆଜିକାଲି ଏହା ମନ୍ତ୍ରୀମାନଙ୍କ ଦ୍ୱାରା ହେଲେ ଭଲ। ଆମେ କଷ୍ଟମୀ ହେଲୁଣି। ଶେଷରେ ଆସିବା ପାଇଁ ସମ୍ମତି ଦେଲେ। ଶୁଭଦିନ ସ୍ଥିର ହେଲା, ଆମେ ଫେରି ଆସିଲୁ।

ଶୁଭଦିନ ଉପଗତ। ସମସ୍ତ ବ୍ୟବସ୍ଥା ହୋଇଥାଏ, କୃଷ୍ଣବଲ୍ଲଭୀ ରଥ ଆଗ୍ରର୍ଯ୍ୟ ମହାଶୟଙ୍କୁ ଧରି ଆସି ପହଞ୍ଚିଲେ। ଶୁଭ ସ୍ଥାନରେ ଶୁଭ ସମୟକୁ ଅପେକ୍ଷା କରାଯାଇଥାଏ, ହରିବୋଲ ହୁଳ ହୁଳିରେ ସ୍ଥାନଟି ଉଚ୍ଛୁଳି ପଡୁଥାଏ, ମହାଶୟ ପଥର ଛୁଇଁଲେ, ପଥର ସ୍ଥାପନ ହେଲା, ପଥର ଉପରେ ମାଟି ଦେଉଥାନ୍ତି, ପାଟିରେ କହୁଥାନ୍ତି, "ଖୁବ ଭଲ ଜାଗା। ଭଲହେବ ହେଉ"। ପାଖରେ ଥାଏ। ପଥରକୁ ଆଉଁସୁଥାଏ। ମନ ଖୁବ୍ ଆନନ୍ଦ। ସତେ ଯେମିତି ପଥର ଦେହରେ ଜୀବନ ସଂଚାର ହେଉଛି। ସେ ଋଷି, ସେ ସନ୍ଥ, ସେ ପଣ୍ଡିତ, ତାଙ୍କ ସ୍ପର୍ଶରେ ବିଦ୍ୟୁତ୍‌ର ଝଲକ। ଦେହ ଶୀତେଇ ଉଠୁଥାଏ, ଅହା ! କି ମୁହୂର୍ତ୍ତ।

ସଭା ଆରମ୍ଭ ହେଲା, ସଭାପତି ଥାନ୍ତି ପ୍ରତିଶ୍ରୁତି ଦେଇଥିବା କଣ୍ଟ୍ରାକ୍ଟର। ଅନ୍ୟାନ୍ୟ ବକ୍ତାଙ୍କ ଭାଷଣ ଶେଷରେ ବହୁ ଅନୁରୋଧରେ ଅଗ୍ରର୍ଯ୍ୟ ଠିଆ ହେଲେ। ଲୋଳିତ ଚର୍ମ, ବର୍ଦ୍ଧିତ ଶ୍ମଶ୍ରୁ, ଦନ୍ତହୀନ, ଦୀପ୍ତିମନ୍ତ କପାଳ, କ୍ଷୀଣ ଶରୀରଟିଏ ଚଦର ଦ୍ୱାରା ଆବୃତ, କରତାଳି ଦ୍ୱାରା ସମ୍ବର୍ଦ୍ଧନା କରାଗଲା, ସଭା ସ୍ଥାନ ନିସ୍ତବ୍ଧ। ମହାଶୟ ଭାଷଣରେ କହିଲେ, ଅର୍ଥକୁ ଲୋକ ବଡ଼ ବୋଲି ଭାବୁଛନ୍ତି, କିନ୍ତୁ ମୋ ମତରେ ଅର୍ଥ ଆଦୌ ବଡ ନୁହେଁ। ମଣିଷ ବଡ଼। ଏ ଅନୁଷ୍ଠାନ ଗୋଟିଏ ମହତ୍ ଅନୁଷ୍ଠାନ ହେବାକୁ ଯାଉଛି। ଏ ଜାଗାରେ ଉତ୍ତମ ମଣିଷ ତିଆରି ହେବେ। ମୁଁ ଜାଣିପାରୁଛି, ଏହା ଅନୁଷ୍ଠାନ ପାଇଁ ଉତ୍ତମ ସ୍ଥାନ। ଭବିଷ୍ୟତ ଭଲ ହେବ। ଗୋଟିଏ କଥା କହିବି ଶୁଣ, ମନେ ରଖିବ। ଅସତ୍ ଉପାୟରେ ଆସୁଥିବା ଅର୍ଥ ଓ ଅସତ୍ ଉପାୟରେ ଅର୍ଜିତ ଧନର ଦାନରେ ଏ ଅନୁଷ୍ଠାନ ଗଢା ହେବନାହିଁ। ଏ ମନ୍ଦିରରେ ଯେଉଁ ଶିକ୍ଷା ଦିଆ ହେବ ତାହା ଉତ୍ତମ ଶିକ୍ଷା ହେଉ, ଭଗବାନ୍ ଅନୁଷ୍ଠାନଟିକୁ ସାହାଯ୍ୟ କରନ୍ତୁ। ବକ୍ତବ୍ୟ ଶେଷ ହେଲା। ଧନ୍ୟବାଦ ଦିଆଯାଇ ସଭା ସାଙ୍ଗ ହେଲା।

ଶେଷରେ ଜଳ ଯୋଗର ବନ୍ଦୋବସ୍ତ ଥିଲା ମୋ ଘର ସାମ୍ନା ବଗିଚାରେ। ନିସନ୍ତି ଅତିଥିଙ୍କ ଗହଣରେ ମହାଶୟ ବସିଥାନ୍ତି। କୃଷ୍ଣ ବଲ୍ଲଭୀ ଖୋଇ ଦେଉଥାନ୍ତି। ଉପରେ ଝୁଲୁଥିବା ଆମ୍ବ ମୁଣ୍ଡରେ ବାଜିଲା, ହସ୍ତ ଉତ୍ତୋଳନ ପୂର୍ବକ ସଚିବାବୁଙ୍କୁ ଡାକି ପଚାରିଲେ କ'ଣ କି ମଚି। ସେ ଗୁଡ଼ିକ ଆମ୍ବ, ବଗିଚାସାରା ଆମ୍ବଗଛ। ଆମ୍ବ ଭର୍ତ୍ତି ସଚି ବାବୁଙ୍କୁ କହିଲେ ତେବେ ଆମ୍ବ ପାଚିଲେ ଆସିବା। ଆମ୍ବ ଖାଇବାକୁ ଖୁବ୍ ଭଲ। ଆଶୀର୍ବାଦ ଦେଇ ଅଗ୍ରର୍ଯ୍ୟେ ବାହୁଡ଼ିଲେ। ସଭାପତି (ପ୍ରତିଶ୍ରୁତି ଦେଇଥିବା କଣ୍ଟ୍ରାକ୍ଟର) ସ୍କୁଲ ଗୃହ କରିବା ପାଇଁ ମନା କଲେ। କହିଲେ ଆମ ଧନହିଁ ଅସତ୍ କଳା। ତାହା ଏ ଅନୁଷ୍ଠାନରେ ଲଗିବ ନାହିଁ। ବଡ ନୈରାଶ୍ୟ ବୋଧ ହେଲା ମାତ୍ର ସମସ୍ୟା ରହିଲା ନାହିଁ। ଖୁବ୍ କମ୍ ଦିନରେ ସ୍କୁଲର ପକ୍କା ଘରଟିଏ ହୋଇ ଅଦ୍ୟାବଧି ଶିକ୍ଷାଦାନ କାର୍ଯ୍ୟ ଚାଲିଛି। ମୋ ଜାଣିବାରେ ସେହି ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇ ବହୁ ଛାତ୍ର, ଉଚ୍ଚ ପଦସ୍ଥ କର୍ମଚାରୀ ହେଲେଣି; ଏବଂ ଶିକ୍ଷକମାନଙ୍କର ମଧ୍ୟ ଉନ୍ନତି ହୋଇଛି।

ପ୍ରକୃତରେ, ସେ ଦିନର କଥା ଆଜି ଭାବିବାକୁ ଖୋରାକ ଯୋଗାଇ ଦିଏ। କୌଣସି ଲୋକ ମଙ୍ଗଳ କାର୍ଯ୍ୟ ଓ ଅନୁଷ୍ଠାନ ପୂର୍ଣ୍ଣାଙ୍ଗ କରିବାରେ ଧନ ଆବଶ୍ୟକ ଠାରୁ ମଣିଷର ମନ ବଡ଼, ସେ ମନଟି ଶୁଦ୍ଧ, ନିର୍ମଳ, ପବିତ୍ର ଏବଂ ଆନନ୍ଦ ପୂର୍ଣ୍ଣ ହେବାର ଅଛି।

*

# ଉତ୍କଳର ଗାନ୍ଧୀ

ଅଧ୍ୟାପକ ତ୍ରିନାଥ ହୋତା

"ପରୋପକାରୈବ ଧିୟଃ ସ୍ୱସୁଖାୟ ଗତ ସ୍ପୃହାଃ
ଜଗଦ୍ଧିତାୟ ଜାୟନ୍ତେ ମାଦବାଃ ବେଦ ଭୂତଳେ" ।

ପ୍ରାତଃ ସ୍ମରଣୀୟ ମହାତ୍ମା ଆଚାର୍ଯ୍ୟ ହରିହରଙ୍କୁ କେବା ନ ଜାଣେ । ଏହି ମହାପୁରୁଷ କେବଳ ଓଡ଼ିଶାର ହିତ ସାଧନରେ ତତ୍ପର ନ ଥିଲେ ସମଗ୍ର ଭାରତ ବର୍ଷପାଇଁ ସମଗ୍ର ଜୀବନକୁ ଉତ୍ସର୍ଗୀକୃତ କରିଥିଲେ । ଯଦି ବା ବର୍ତ୍ତମାନ ଆଚାର୍ଯ୍ୟ ମହାଶୟ ଏହି ଜଗତରେ ଭୌତିକ ଶରୀରରେ ନାହାଁନ୍ତି କିନ୍ତୁ ଯଶର ଶରୀର ଏପର୍ଯ୍ୟନ୍ତ ରହିଛି ଏବଂ ରହିବ । ସତ୍ୟ, ଅହିଂସା ଓ ଲୋକସେବା ଏହି ତିନି ଈଶ୍ୱରର ଉପାସନାରେ ମହାଶୟଙ୍କ ଉଦ୍ଦେଶ୍ୟ ନିହିତ ଥିଲା ; ଯାହାଦ୍ୱାରା କି ସେ ସମସ୍ତଙ୍କ ହୃଦୟ ଜୟ କରିପାରିଥିଲେ । ଦେଶର ବାପୁଜୀଙ୍କୁ ଆଜି ସମସ୍ତେ ମନେ ରଖିଛନ୍ତି କାରଣ ସେ ଦେଶର ଉନ୍ନତି ପାଇଁ ନିଜର ଜୀବନକୁ ସମର୍ପଣ କରିଥିଲେ । ସେହିପରି ଆଚାର୍ଯ୍ୟ ହରିହର ଓଡ଼ିଶାରେ ଦ୍ୱିତୀୟ ଗାନ୍ଧୀ ହିସାବରେ ପରିଚିତ । ଏହି ପରିପ୍ରେକ୍ଷୀରେ ମତ ଦେବାକୁ ଯାଇ ଐତିହାସିକ କୃପାସିନ୍ଧୁ ହୋତା କହିଛନ୍ତି —

"ଗାନ୍ଧିଜୀ ଓ ଆଚାର୍ଯ୍ୟ - ଉଭୟ ଚରିତ୍ରରେ ପୁରାପୁରି ମେଳ । କେବଳ ଏତିକି ପ୍ରଭେଦ- ଗାନ୍ଧିଙ୍କୁ ଲୋକେ ଗୁଳିକରି ମାରିଥିଲେ କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କୁ କେହି ଦିନେ ଟେକାଟିଏ ମାରିବାକୁ ସାହସ କରିନାହିଁ" ।

ଶ୍ରୀ ହରିହର ଦାସ ଓଡ଼ିଶାର ଏକମାତ୍ର ଆଚାର୍ଯ୍ୟ ଯେପରି ବ୍ରହ୍ମର୍ଷି ବଶିଷ୍ଠ । ଅତୀତର ଆଚାର୍ଯ୍ୟମାନଙ୍କ ପରି ନିର୍ଜନ ଗିରି କନ୍ଦରରେ କିମ୍ବା ଘନାରଣ୍ୟରେ ତାଙ୍କର ତପୋବନ ନ ଥିଲା । ସମସ୍ୟା ଜର୍ଜରିତ ଜନ ସମାଜ ଥିଲା ତାଙ୍କର ଆଶ୍ରମ । ତାଙ୍କର ତପସ୍ୟା ଥିଲା ଜନସେବା ରୂପକ ସୂକ୍ଷ୍ମ ଯଜ୍ଞ । ତାଙ୍କ ଯୋଗ ବୈକୁଣ୍ଠବାସୀ ପରମାତ୍ମାଙ୍କ ସହିତ ନ ଥିଲା, ଥିଲା ଜନତା ଜନାର୍ଦ୍ଦନଙ୍କ ସହିତ । ତାଙ୍କ ତୀର୍ଥ ଭାରତର ପ୍ରସିଦ୍ଧ ଚାରିଧାମ ମଧ୍ୟରେ ଆବଦ୍ଧ ନ ଥିଲା ଏହା କୋଟିତୀର୍ଥ ଗ୍ରାମରୁ ଗ୍ରାମାନ୍ତର ବ୍ୟାପୀ ରହିଥିଲା । ତାଙ୍କର ଆରାଧ୍ୟ ଦେବତା ଥିଲ ସତ୍ୟମନ୍ତ୍ର ଓ ଶାନ୍ତିମନ୍ତ୍ର ହୋମ ଯଜ୍ଞରେ ସେ ଘୃତାହୁତି ଦେଉଥିଲେ କର୍ମ ଯଜ୍ଞରେ ସେ ଦେଉଥିଲେ ଆତ୍ମାହୁତି ।

କର୍ମମୟ ଜୀବନ ମଧ୍ୟରେ ପ୍ରତ୍ୟେକ ମନୁଷ୍ୟକୁ ସମାନ ଭାବରେ ଗ୍ରହଣ କରିବା ଆଚାର୍ଯ୍ୟ ମହାଶୟଙ୍କ ଏକ ସାଧନା ଥିଲା । ସମତ୍ୱ ଯୋଗମୁଚ୍ୟତେ । ଗୀତାରେ କୁହାଯାଇଛି—

"ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗ ତ୍ୟକ୍ତ୍ୱା ଧନଞ୍ଜୟ
ସିଦ୍ଧ୍ୟାସିଦ୍ଧ୍ୟୋ ସମୋଭୂତ୍ୱା ସମତ୍ୱଂ ଯୋଗମୁଚ୍ୟତେ" ।

---

Common sense is the most Uncommon Commodity in the world.
—Gandhiji

ଅର୍ଥାତ୍ ହେ ଧନଞ୍ଜୟ ତୁମେ ଫଳ କାମନା ତ୍ୟାଗ କରି ନିଷ୍କାମ ଭାବରେ ରହି କର୍ମର ସିଦ୍ଧି ଅସିଦ୍ଧି ଆସକ୍ତିରେ ସମାନ ଜ୍ଞାନ କରି କର୍ମ କର । ସେହି ସମଜ୍ଞାନକୁ ଯୋଗ କୁହାଯାଏ । ଗୀତାର ଏ ବଚନଗୁଡ଼ିକ ମୁଖ ନିସୃତ । ଏହା ପଢ଼ିଲେ ଯେଉଁ ଶବ୍ଦାର୍ଥ ବୋଧହୁଏ, ତହିଁରୁ ଆମେ ବିଚାରୁ ଏପରି ସମତ୍ୱବୁଦ୍ଧି ସମ୍ପନ୍ନ ବ୍ୟକ୍ତି ସମଦର୍ଶୀ ମନୁଷ୍ୟ ସମାଜରେ ବିରଳ । ଶରୀର ଥିଲେ ଅହଂକାର ଅଛି । ଅହଂକାରରୁ ବିଷମ ଭାବନା । ତହୁଁ ସୁଖ, ଦୁଃଖ, ବିରହ ବିରହ ବେଦନା ଓ ବିକାର । "ସମତ୍ୱଂ ଯୋଗ ମୁଚ୍ୟତେ" ସତ୍ୟ ହେଲେ ମଧ୍ୟ ସମ୍ଭବ ନୁହେଁ । ସମ୍ଭାବନା ନ ଥାଇ ସତ୍ୟର କଳ୍ପନା କରାଯାଇପାରେ କିନ୍ତୁ ନିଦର୍ଶନ ନଥିଲେ ସତ୍ୟର ପ୍ରତ୍ୟୟ ହୁଏ । ଆଚାର୍ଯ୍ୟ ଏହି ସମତ୍ୱର ନିଦର୍ଶନ କ୍ଷୋଭ ନାହିଁ, ଅଭିଯୋଗ ନାହିଁ, ଅଭିମାନ ନାହିଁ ବିଶ୍ୱ ମୈତ୍ରୀର ଏକ ଅପୂର୍ବ ପ୍ରତିଭା, ମନୁଷ୍ୟ ତାର ଅବତାର ଓ ଏହି ଦୈବୀସମ୍ପଦର ଅଧିକାରୀ ହୋଇଛନ୍ତି ଆଚାର୍ଯ୍ୟ ।

ମହାତ୍ମାଗାନ୍ଧୀ ଯେପରି ଗୀତୋପନିଷଦର ବାଣୀକୁ ଅନୁସରଣ କରି ଈଶ୍ୱରଙ୍କ ପ୍ରେରଣା ଦ୍ୱାରା ପ୍ରତ୍ୟେକ କାର୍ଯ୍ୟ କରିବା ପାଇଁ ପ୍ରେରିତ ହୋଇଥିଲେ, ସେହିପରି ଆଚାର୍ଯ୍ୟ ହରିହର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖି ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦଳିତ ପତିତ ଅପମାନିତ ଜନତାଙ୍କୁ ଭଗବାନ୍ ମନେ କରି ବିକାର ଶୂନ୍ୟ ଭାବରେ ସେବା କରୁଥିଲେ । ଗାନ୍ଧିଜୀଙ୍କର ସମସ୍ତ ପ୍ରକାର ଗୁଣର ଅଧିକାରୀ ଥିବାରୁ ଆଚାର୍ଯ୍ୟ ହରିହର ଉତ୍କଳର ଗାନ୍ଧୀ ହିସାବରେ ପରିଚିତ ।



Remove war or war will remove you— Jawaharlal Nehru

# ଭୁବନେଶ୍ୱର ପୌର ପରିଷଦର ସଂବେଦନା

ସୁନ୍ଦର, ନିର୍ମଳ ଓ ସ୍ୱାସ୍ଥ୍ୟକର ସହର କରି ଭୁବନେଶ୍ୱରକୁ ଗଢ଼ିବା ପାଇଁ ପୌର ପରିଷଦ ତାର ଅଗଣିତ କର୍ମଚାରୀ ଓ ଜନସାଧାରଣଙ୍କର ସେବାରେ ଆତ୍ମନିୟୋଗ କରିଆସୁଅଛି । ସହରର ଲୋକଙ୍କ ବିଶେଷ ସୁବିଧା ପାଇଁ ସ୍ୱଳ୍ପ ସେବା, ଉଦ୍ୟମ, ସହର ବାସୀଙ୍କର ମନସ୍ତାତ୍ତ୍ୱିକ ଓ ବୈଷୟିକ ଜୀବନର ଘଟଣା ପ୍ରବାହ ପ୍ରତି ଭୁବନେଶ୍ୱର ପୌର ପରିଷଦ ସର୍ବଦା ଧ୍ୟାନଶୀଳ ଓ ସଚେତନ । ପୌର କର୍ମଚାରୀଙ୍କ ସଂକଳ୍ପବଦ୍ଧ ଉଦ୍ୟମ, ପୌର ସମ୍ବଳ ବୃଦ୍ଧି ଏବଂ ପୌର ସଂପତ୍ତିର ସୁରକ୍ଷା ପାଇଁ ଜନସାଧାରଣଙ୍କ ସହଯୋଗରେ ହିଁ ଏହା ସମ୍ଭବ ହୋଇପାରିବ ।

ଅତଏବ ଆପଣ ସହର ପରିବେଶର ସୁରକ୍ଷା ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ।
ଆସନ୍ତୁ ପୌର କର୍ମଚାରୀଙ୍କୁ ସହାୟକ ହୁଅନ୍ତୁ

୨) ରାସ୍ତା ଆଲୁଅର ବାଡ଼ ଓ ଫିଟିଂଗସ, ପାଣିକଳର ପାଇପ ଇତ୍ୟାଦି ପୌର ସଂପତ୍ତିର ଭଙ୍ଗାରୁଜା ଓ ଚୋରି କରୁଥିବା କାର୍ଯ୍ୟରେ ଅନେକ ଅସାମାଜିକ ଲୋକ ବର୍ତ୍ତମାନ ଲିପ୍ତ ଥିବାରୁ ଆପଣମାନେ ବହୁତ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ତାଙ୍କ ପ୍ରତି କଠୋର ମନୋବୃତ୍ତି ଗ୍ରହଣ କରି ପୌର ସଂପତ୍ତିର ସୁରକ୍ଷା କରନ୍ତୁ ।

୩) ଭୁବନେଶ୍ୱର ପୌର ପରିଷଦ ଦ୍ୱାରା ପରିଚାଳିତ ଟାଉନ ବସ୍‌ରେ ଯାତାୟାତ କରିବା ସମୟରେ ଭଡ଼ା ପଇଠ କରି ଟିକେଟ ମାଗନ୍ତୁ ।

୪) ସହରର ରାସ୍ତା କଡ଼ ଅବରୋଧ ନକରି ଯାନବାହାନ [illegible] କରନ୍ତୁ ।

୫) ପରିବେଶକୁ ପରିଷ୍କାର ରଖନ୍ତୁ, ସୁଲଭ ଶୌଚାଳୟ ବ୍ୟବହାର କରନ୍ତୁ । ରାସ୍ତା କଡ଼ରେ ମଳତ୍ୟାଗ କରୁଥିବା ବ୍ୟକ୍ତିଙ୍କ ପ୍ରତି କଠୋର ମନୋଭାବ ପୋଷଣ କରନ୍ତୁ ।

୬) ଗୃହ ପାଳିତ ପଶୁମାନଙ୍କୁ ସହରର ରାସ୍ତାଘାଟରେ ନଛାଡ଼ି ନିୟନ୍ତ୍ରଣାଧୀନ ରଖନ୍ତୁ ।

୭) ପୌର ପରିଷଦର ବକେୟା [illegible] ଆଦି ଯଥା ସମୟରେ ଭରଣା ଦେଇ ପୌର ପାଣ୍ଠିକୁ ସମୃଦ୍ଧ କରନ୍ତୁ ।

**ଶ୍ରୀ ସୁଦାମ ଚରଣ ପଟ୍ଟନାୟକ**, ଆଇ.ଏ.ଏସ୍.
ପୂର୍ତ୍ତ ଜିଲ୍ଲାପାଳ, ତଥା ସଭାପତି,
ଭୁବନେଶ୍ୱର[illegible]

**ଶ୍ରୀ ରାମଚନ୍ଦ୍ର ପଣ୍ଡା**, ଓ.ଏ.ଏସ (I)
କାର୍ଯ୍ୟନିର୍ବାହୀ ଅଧିକାରୀ,
ଭୁବନେଶ୍ୱର ନଗରପାଳିକା, ଭୁବନେଶ୍ୱର ।

# ଆଚାର୍ଯ୍ୟ ମହାଶୟଙ୍କ ଜୀବନାଦର୍ଶ

କଣ୍ଠୁରି ଚରଣ ନାୟକ
ଉପାଧ୍ୟାୟ ଶର୍ମା.

ଭୁବନେଶ୍ୱରରେ ଆଚାର୍ଯ୍ୟ ହରିହର ଦାସଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସ୍ଥାପିତ ମହାବିଦ୍ୟାଳୟର ନାମ "ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟ" ରଖାଯାଇଛି । ଏଥିପାଇଁ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ । ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ ଅନେକ ଆଚାର୍ଯ୍ୟ ମହାଶୟଙ୍କ ସମ୍ପର୍କରେ ଆସିଛନ୍ତି ଏବଂ ସେମାନେ ଗୋଟିଏ ସୁଶୃଙ୍ଖଳିତ ଜ୍ଞାନପୂର୍ଣ୍ଣ ସମାଜ ଗଠନ ପାଇଁ ବ୍ୟାକୁଳ ।

ମୁଁ ତ ଆଚାର୍ଯ୍ୟ ମହାଶୟଙ୍କର ପରିଣତ ବୟସରେ ତାଙ୍କ ସମ୍ପର୍କରେ ଆସିଲି । ତାଙ୍କର ଅଟଳ କାର୍ଯ୍ୟକ୍ଷମ ବୟସବେଳେ ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଥିଲେ ଏବଂ ତାଙ୍କ ବିଷୟରେ ଅବହିତ ସେମାନଙ୍କ ଭିତରୁ ଅନେକ ଚାଲିଗଲେଣି । ବାକି ଯେଉଁମାନେ ରହିଛନ୍ତି,ସେମାନେ ଯିବାପାଇଁ ସଜବାଜ ହେଲେଣି । ଏହି ମହାନ୍ ବ୍ୟକ୍ତିମାନଙ୍କ ଲେଖନୀ ଶକ୍ତି ସଂଗଠନ କରି ଯଦି ମହାବିଦ୍ୟାଳୟର ଅନୁକୂଳରେ ଆଚାର୍ଯ୍ୟ ମହାଶୟଙ୍କର ଗୋଟିଏ ସମ୍ପୂର୍ଣ୍ଣ ଜୀବନୀ ସଂକଳନ କରାଯାଇ ପାରନ୍ତା, ତାହା ସମାଜର ଗୋଟିଏ ଅମୂଲ୍ୟ ସମ୍ପଦ ହୋଇ ରହନ୍ତା । ଆମର ଭବିଷ୍ୟ ଯୁବଗୋଷ୍ଠୀମାନଙ୍କୁ ପଥପ୍ରଦର୍ଶନ କରାଇବାରେ ସହାୟକ ହୁଅନ୍ତା ।

କାହାକୁ ଚାହିଁ ଯୁବକମାନେ ତାଙ୍କର ଜୀବନ ଗଠନ କରିବେ ? ଏ ଘୋର କଷ୍ଟ ଯୁଗ । କ୍ଷମତାକୁ ଯିବା ଏବଂ ସମ୍ବର୍ଦ୍ଧନ ପାଇଁ କ୍ଷମତାରେ ରହିବାକୁ ଉଦ୍ୟମ କରିବା ଆମ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର କାର୍ଯ୍ୟ । ପିଲାଙ୍କ ଆଖିଆଗରେ ସେହିମାନେ ପଡ଼ୁଛନ୍ତି । ଏଥିରେ ଆଚାର୍ଯ୍ୟ ମହାଶୟଙ୍କ ଭଳି ବ୍ୟକ୍ତି ତାହାଙ୍କର କପରି ? ଆଚାର୍ଯ୍ୟ ମହାଶୟଙ୍କ ଭଳି ପ୍ରତିଭାବାନ୍ ପିଲା ଯେ ଜନ୍ମ ହେଉନାହାନ୍ତି ତା ନୁହେଁ । କିନ୍ତୁ ସେମାନଙ୍କ ଶକ୍ତି ଭିନ୍ନମାର୍ଗରେ ପରିଚାଳିତ ହୋଇ-ଯାଉଛି । ଏକ ସମୟରେ ଏହି ପ୍ରକାର ପିଲା ରାଜନୀତି ଚର୍ଚ୍ଚା କରୁଥିଲେ, ଏବଂ ସମାଜ ପାଇଁ ସକଳ ତ୍ୟାଗ କରିବାକୁ ପ୍ରସ୍ତୁତ ହେଉଥିଲେ ଏବେ ସେ ପ୍ରକାର ପିଲାମାନେ ଉଚ୍ଚ ଡିଗ୍ରୀ ପାଇବା, ବଡ ଚାକିରୀ ପାଇବା, କୌଣସି ଉପାୟରେ ଧନ ଠୁଳକରିବା, ଏବଂ ଭଲ ଶଶୁର ଘରଟିଏ ପାଇବା, ଲକ୍ଷ୍ୟ ରଖୁଛନ୍ତି । ସମାଜରେ ମଧ୍ୟ ଏହି ଶ୍ରେଣୀର ଲୋକଙ୍କର ପ୍ରତିଷ୍ଠା ଅଧିକ । ଏଥିରେ ଦୋଷ ଦେବା କାହାକୁ ?

ଧରନ୍ତୁ ,ଆମେ କୌଣସି ସଭାସମିତି କରିବାକୁ ଯିବୁ । ସୁସଜ୍ଜିତ ପେଣ୍ଡାଲ ହୋଇଥିବ । ଜ୍ଞାନବାଜି ଯନ୍ତ୍ରର ବ୍ୟବସ୍ଥା ଥିବ । ଚାଲିବେଳେ ଆଗରେ ପଛରେ ପାଞ୍ଚଖଣ୍ଡ ଗାଡ଼ି ଯାଉଥିବ, ସଭାରେ ଶୁଣିବା ପାଇଁ ଅସଂଖ୍ୟ ଲୋକ ଆସିଥିବେ, ପିଲାଏତ ଏଇଆ ଦେଖୁଛନ୍ତି । ଆଚାର୍ଯ୍ୟ ମହାଶୟ ମଧ୍ୟ ବହୁ ସଭା ସମିତି କରିଛନ୍ତି । ହେବେ ତ

କୌଣସି କ୍ଷମତାକୁ ଯାଇନାହାନ୍ତି । ଏପରିକି ଉତ୍କଳ ବିଶ୍ୱବିଦ୍ୟାଳୟରୁ ମିଳିଥିବା ତାଙ୍କର ଡକ୍ଟରେଟ୍ ଉପାଧିକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଛନ୍ତି । ଏଠି ଗୋଟିଏ କଥା ମନେ ପଡ଼ୁଛି ।

ବିନୋବାଜୀଙ୍କର ଭୂଦାନ ଆନ୍ଦୋଳନ ସମୟ, ଶାନ୍ତିପୂର୍ଣ୍ଣ ଭାବରେ ଭୂସମସ୍ୟାର ସମାଧାନ କରିବାକୁ ହେବ । କାହାରିକୁ ତ ଜୋରଜବରଦସ୍ତ କରି ଜମି ଛଡ଼େଇ ନିଆଯିବନାହିଁ । ତଥାପି ଭୂମି ମାଲିକଙ୍କ ଭିତରେ ମହା ଆତଙ୍କ ଖେଳିଯାଇଥାଏ । ଆଚାର୍ଯ୍ୟ ମହାଶୟ ପଦଯାତ୍ରା କରି ଭୂମିଦାନ ମାଗୁଥାନ୍ତି । ସଙ୍ଗରେ ଆମେ ୪।୫ ଜଣ କର୍ମୀ ଥାଉ । ଶିଉଳା ବୋଲି ଗାଁଟିଏ । ପୂର୍ବରୁ ଆଚାର୍ଯ୍ୟ ମହାଶୟଙ୍କୁ ଜାଣିଥିବା ଜଣେ ଦୁଇଜଣ ଭୂମିବାନ୍ ବ୍ୟକ୍ତି ଆଚାର୍ଯ୍ୟ ମହାଶୟଙ୍କ ଯିବା ଖବର ପାଇ କେଉଁ କାରଣରୁ ଗାଁ ଛାଡ଼ି ଚାଲିଯାଇଥାନ୍ତି । ଯିବୁ ବୋଲି କୌଣସି ଗ୍ରାମକୁ ଆଗରୁ ଖବର ଦିଆ ଯାଉନଥାଏ । ଘର ଘର ବୁଲି ଲୋକଙ୍କୁ ଡାକି ଆଲୋଚନା କରାଯାଉଥାଏ । ଏହି ଆଲୋଚନାକୁ ଅଧିକ ଗରିବ ଲୋକେହିଁ ଆସିଥାନ୍ତି । ସାଥିରେ କିଛି ଖାଦ୍ୟ ଜିନିଷ ନ ଥାଏ । ଯେଉଁଠି ଯାହା ମିଳିଥାଏ, ଖାଉଥାଉ । ବେଳେ ରହିବାର ଘର ମଧ୍ୟ ମିଳେନାହିଁ । ସ୍କୁଲଘର ବା ବାରଣ୍ଡା ଆଶ୍ରୟ ସ୍ଥଳ । କୌଣସି କୌଣସି ଜାଗାରେ ଯେ ଲୋକ ଅଭ୍ୟର୍ଥନା କରନ୍ତିନାହିଁ ତା ନୁହେଁ । ଖୁବ୍ ଖୁସିର ସହିତ ଆଚାର୍ଯ୍ୟ ମହାଶୟଙ୍କ ନିକଟକୁ ଆସନ୍ତି । ବାଟରୁ ପାଛୋଟି ନିଅନ୍ତି । ଆଡମ୍ବରର ସହିତ ଖାଦ୍ୟପେୟର ଆୟୋଜନ କରନ୍ତି । ଏଠି କିନ୍ତୁ ହାଓ୍ୱା ଭିନ୍ନ ପ୍ରକାର । ଖାଇବାକୁ ଦେବା ଦୂରର କଥା । ଆଲୋଚନା କରିବା ପାଇଁ ପାଖକୁ କେହି ଆସିଲେ ନାହିଁ । କ୍ରମେ ମଧ୍ୟାହ୍ନ ସମୟ ହୋଇଗଲା, କିଛି ତ ନିଶ୍ଚୟ ଖାଇବାକୁ ହେବ ।

ଗରିବ ବିଧବା ବୁଢ଼ୀଟିଏ । ଝିଅ ବୋଲି ଗୋଟିଏ, ବାହାହୋଇ ଶାଶୁ ଘରକୁ ଚାଲିଯାଇଛି । ଜମିବାଡ଼ି କିଛି ନାହିଁ । ଘର ବୋଲି ଝାଟି ମାଟି । ଦୁଇ ବଖରା ଘର । ଗାଈ ଦୁଇଟି ସମ୍ବଳ । ତାଙ୍କ ଅଶ୍ରାବର ଦୁଧ, ଦହି ବିକି କରି କୌଣସି ପ୍ରକାର ଚଳିଯାଏ । ଆମଠୁଁ ଭୂଦାନ କଥା ଶୁଣିଲା । ଖୁବ୍ ଖୁସି ହେଲା, ବେଳ ହୋଇଗଲାଣି । କଣ ଖାଇବ ବୋଲି ପଚାରିଲା । ଆମେ ଯେ ତା ଘରେ ଖାଇବୁ ଏହା ସେ କଳ୍ପନା କରିନଥିଲା । ଘରେ ରାନ୍ଧିକରି ଖାଇବାକୁ ଦେବାପାଇଁ ରାଜି ହୋଇଗଲା, ଘରେ କିନ୍ତୁ ଯାହା ଚାଉଳ ଥିଲା, ୭ ଜଣଙ୍କୁ ପାଇବ ନାହିଁ । ଆମେ ଦୋକାନରୁ ସେରେ ଚାଉଳ ଆଣିଦେଲୁ । ଭାତରେ ଯିନା ଯୋଗାଡ଼ ହୋଇ ଗଲା, ତର୍କାରି ତ ଦରକାର । କର୍ଷାଦିନ, ବୁଢ଼ୀ ବାଡ଼ିରେ ଖଡ଼ାଶାଗ ଥିଲା । ବୁଢ଼ୀ ଭାତ ରାନ୍ଧି ପଖାଳ କରିଦେଲା । ଖଡ଼ାଶାଗ ଭାଜି ଦେଲା । ସେଥିରେ ଦହି ପକାଇ ଦେଲା । କି ଭାବରେ ଯେ ବୁଢ଼ୀ ରାନ୍ଧୁଥାଏ, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ଆମକୁ ଭୋକ କରୁଥାଏ । କିନ୍ତୁ ଆଚାର୍ଯ୍ୟ ମହାଶୟ ଆମକୁ ନାନା ମଜ୍ଜାକଥା କହି ଏପରି ମଜେଇଥାନ୍ତି ଯେ ସେ ଭୋକ ଆମେ ଭୁଲିଯାଇଥାଉ । ବୁଢ଼ୀ ବାଡ଼ିରେ ସୂର୍ଯ୍ୟମୁଖୀ ଲଙ୍କା ଥିଲା । ସେଥିରୁ ଗୋଟିଏ ଲେଖାଏଁ ଦେଲା, ଓଃ ଏଥିରେ ଆଚାର୍ଯ୍ୟ ମହାଶୟଙ୍କର କି ଆନନ୍ଦ ? ମୁଁ ତ ଲେଖକ ନୁହେଁ । ତାହା ପ୍ରକାଶ କରିବି କିପରି ?

ଶାଗରେ ଲଙ୍କାକୁ ଚକଟିଦେଲେ, ଯେତିକି ପରିମାଣରେ ଖାଇବାର କଥା, ଖାଇଦେଲେ । ଖାଇବାବେଳେ ତାଙ୍କୁ କେହି ବଳେଇକରି ଖୁଆଇ ପାରିବନାହିଁ । କିନ୍ତୁ ସେ ଏପରି କେତେକ କଥା କହନ୍ତି ଯେ, ତାଙ୍କ ସାଙ୍ଗରେ ଯେ ଖାଇବସିଥିବେ, ସେ ନିଶ୍ଚୟ ଅଧିକ ଖାଇଦେବେ । "ଆରେ ଛୋଟକେଇଏ ଦାଇଗଣରେ କଣ ହେବରେ ଶୋଶକ ଧରିବ ନାହିଁ" ଏହିଭଳି ନାନାକଥା । ସେତିକିବେଳେ ତାଙ୍କର ବକୁଳ ବନ ବିଦ୍ୟାଳୟର ଗୋଟିଏ ଅନୁଭୂତି କହିଲେ ।

"କଞ୍ଚାଲଙ୍କାକୁ ସେ ଖୁବ୍ ଭଲପାଆନ୍ତି । ରାଗ ତର୍କାରି ଖାଇବାକୁ ଭଲଲାଗେ । ସେ ବିଦ୍ୟାଳୟ ବୋର୍ଡ଼ିଂର ସୁପରିଣ୍ଟେଣ୍ଡେଣ୍ଟ ଥାନ୍ତି । ଦିନେ ଦିନେ ଛାତ୍ରଙ୍କ ଖାଇସାରିଲେ କିମ୍ବା ଦିନେ ଦିନେ ପିଲାଙ୍କ ସହିତ ଏକାଠି ବସି ଖାଆନ୍ତି,

ତକାଣ୍ଠା ପରିମାଣ ଅଳ୍ପଥାଏ । ସେଥିରେ ଟିକିଏ ଲଙ୍କା ଖାଇଦେଲେ ଅଳ୍ପ ତର୍କାଣ୍ଠା ଘେନ ଖାଇ ହୋଇଯାଏ । ସେହି ସମୟରୁ ରାଗ ଖାଇବା ତାଙ୍କର ଅଭ୍ୟାସ ରହିଯାଇଛି । ଖାଇସାରି ବୁଢ଼ୀ ଦାଣ୍ଡଘରେ ନିଶ୍ଚିନ୍ତରେ ଶୋଇଗଲେ । ଉପର ଓଳିକୁ ଅନ୍ୟଗ୍ରାମ । ବୁଢ଼ୀକୁ ଧନ୍ୟବାଦ ଦେଇ ତା ଝିଅକୁ କଲ୍ୟାଣ କରି ବିଦାୟ ନେଇଗଲେ ।

ଏଇଠି ଲକ୍ଷ୍ୟ କରିବାର କଥା, ଆଚାର୍ଯ୍ୟ ମହାଶୟ ଯେକୌଣସି ପରିସ୍ଥିତିରେ ନିଜକୁ ଖାପଖୁଆଇ ପାରୁଥିଲେ, ସେଇଥିପାଇଁ ସେ ସର୍ବଦା ଶାନ୍ତି ପାଉଥିଲେ । ରାଗିବାର ମୁଁ କେବେହେଁ ଦେଖିନାହିଁ । କୌଣସି ଦୁଃଖ ଭୁଲିଯିବାର ଅନୁଭୂତ ଅଛି । ଥରେ ହେଲେ ଯେ ତାଙ୍କ ସମ୍ପର୍କରେ ଆସିଛି, ସେ କଦାପି ତାଙ୍କୁ ଭୁଲି ପାରିବନାହିଁ । ସେଇଥି-ପାଇଁ ସେ ଅନେକଙ୍କୁ ଏକଜ କରିପାରୁଥିଲେ । ଶେଷ ବେଳକୁ ତାଙ୍କର ଦୁଇଟା ଯାକ ଆଖି ଖରାପ ହୋଇଗଲା । କିଛି ସିନା ଦେଖିପାରିଲେ ନାହିଁ ; ହେଲେ ସ୍ୱର ବାରି ସେ ଚିହ୍ନି ପାରୁଥିଲେ, ପିଲାଦିନେ କେତେ ଦୟାନିଧି ମିଶ୍ରଙ୍କୁ ପାଠ ପଢ଼େଇଥିଲେ, ୯୦ ବର୍ଷ ବୟସରେ ମଧ୍ୟ କଥା ଶୁଣି, କିରେ ଦୟାନିଧି କେତେବେଳେ ଆସିଛ ବୋଲି ପଚାରୁଥିଲେ । ବିଦାୟବେଳେ ଆଉ କେବେ ଆସିବୁ ବୋଲି କହୁଥିଲେ ।

ଶେଷରେ ଉଦ୍ୟୋକ୍ତାମାନଙ୍କର ଲକ୍ଷ୍ୟ ପୂରଣ ହେଉ ଏବଂ ଶ୍ରମ ସାର୍ଥକ ଲଭୁ ବୋଲି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା । ମହାବିଦ୍ୟାଳୟରୁ ଜଣେ ଯଦି ବି ଛାତ୍ର ବାହାରେ, ସେହି ହେବ ଦେଶର ସମ୍ପଦ ।

# ଆଶ୍ଚର୍ଯ୍ୟ ବାବୁ

ମଦନ ମୋହନ ସାହୁ

ଅପ୍ରତ୍ୟାଶିତ ଭାବେ ଅଧ୍ୟକ୍ଷ, ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟ; ଭୁବନେଶ୍ୱରଙ୍କଠାରୁ ଆଚାର୍ଯ୍ୟ ମହାଶୟଙ୍କ ସମ୍ବନ୍ଧରେ ମହାବିଦ୍ୟାଳୟ ତରଫରୁ ପ୍ରକାଶିତ ହେଉଥିବା ସ୍ମାରକୀ ନିମନ୍ତେ ଗୋଟିଏ ଲେଖା ପଠାଇବାକୁ ପତ୍ରପାଇ ଆଶ୍ଚର୍ଯ୍ୟ ଲାଗିଲା । ଆଚାର୍ଯ୍ୟ ମହାଶୟଙ୍କୁ ଜାଣିଥିବା ଗାଁ ଗହଳର କେତେକ ଲୋକ ତାଙ୍କୁ "ଆଶ୍ଚର୍ଯ୍ୟବାବୁ" ବୋଲି ଶ୍ରଦ୍ଧାରସହ ସମ୍ବୋଧନ କରୁଥିଲେ । ଏହା ଶୁଣିବାକୁ ଯେପରି କେତେକଙ୍କୁ ବଡ଼ ଅଡୁଆ ଲାଗେ, କିନ୍ତୁ ଉପାୟ ନାହିଁ । ଲୋକଙ୍କର ଶ୍ରଦ୍ଧା ପାଖରେ ମୁଣ୍ଡପାତି ସହିବାକୁ ହୁଏ । ଆମେମାନେ ତାଙ୍କୁ ଆଚାର୍ଯ୍ୟ ମହାଶୟ କହୁଥିଲୁ ମାତ୍ର ଲେଖାଲେଖିରେ ତଥା ସଭାସମିତିରେ ସେ ଋଷିପ୍ରତିମ ଆଚାର୍ଯ୍ୟ ମହାଶୟ ଭାବେ ସମ୍ବୋଧିତ ହେଉଥିଲେ । ଗାନ୍ଧୀଯୁଗର ଗାନ୍ଧୀବାଦୀଙ୍କ ମଧ୍ୟରେ ଯେଉଁ ଦୁଇଜଣ ଋଷିପ୍ରତିମ ସମୁନ୍ନତ ବିଚାର ଓ ଆଚାରର ବ୍ୟକ୍ତି ଥିଲେ ସେ ମଧ୍ୟରୁ ଜଣେ ପୂର୍ବସ୍ଥ ଜଗନ୍ନାଥ ଆମର ବାଡ଼ିକ୍ଳର ଆଚାର୍ଯ୍ୟ ହରିହର ଦାଶ ଓ ଅନ୍ୟଜଣଙ୍କ ହେଲେ ଦ୍ୱାରକା ଧାମସ୍ଥିତ ଗୁଜରାଟ ରାଜ୍ୟର ରବିଶଙ୍କର ମହାରାଜ । ଏହି ଏହି ମହାନୁଭବ ବ୍ୟକ୍ତିଦ୍ୱୟଙ୍କ ନିରାଡମ୍ବର, ସରଳ ଜୀବନ ଓ ଉନ୍ନତ ଚିନ୍ତନ ସହ ଆଜୀବନ ସତତ ସେବା ଓ ନିଷ୍ଠା ତାଙ୍କୁ ପୁରାଣ ଯୁଗର ବୈଦିକ ଋଷିଙ୍କ ପ୍ରତିଷ୍ଠା ପ୍ରଦାନ କରିଛି । ଆଚାର୍ଯ୍ୟ ମହାଶୟଙ୍କୁ ଯେ ଦେଖି ନାହାନ୍ତି ଏହାକୁ ତ ବିଶ୍ୱାସ କରିବେ ନାହିଁ ମାତ୍ର ଯେ ତାଙ୍କୁ ଦେଖିଛନ୍ତି ତାହାଙ୍କ ପାଖରେ ରହି ସାହଚର୍ଯ୍ୟ ଲଭିଛନ୍ତି ସେ ମଧ୍ୟ ଆଶ୍ଚର୍ଯ୍ୟ ଚକିତ ହୋଇଛନ୍ତି । ଆଚାର୍ଯ୍ୟ ମହାଶୟ ଥିଲେ ଅକୁଣ୍ଠ ସେବାଦାୟୀ ମାତ୍ର ସକୁଣ୍ଠ ସେବାଗ୍ରାହୀ । ସେ ସମସ୍ତଙ୍କର ସବୁ ପ୍ରକାର ସେବା କରିବାର ସୁଯୋଗ ନେବେ କିନ୍ତୁ ଊଷା ଆଗମନ ପୂର୍ବରୁ ଏପରି ଭାବରେ ନିଜର ନିତ୍ୟକର୍ମମାନ ସମାପ୍ତ କରିଥିବେ ଯେ ଅନ୍ୟ କେହି ପାଖ ଲୋକ ତାଙ୍କର ସାମାନ୍ୟ ସେବା କରିବାର ସୁଯୋଗ ନେଇପାରିବେ । ସେ ଥିଲେ ଆଶ୍ଚର୍ଯ୍ୟ ଜନକ ନୀରବ ସାଧକଟିଏ ।

ସତ୍ୟବାଦୀ ବକୁଳ ବନରେ ପଞ୍ଚସଖା ଗୋପବନ୍ଧୁ, ହରିହର, ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କ ମଧ୍ୟରେ ବୟସରେ ଆଚାର୍ଯ୍ୟ ମହାଶୟ ଥିଲେ ଦ୍ୱିତୀୟ ସ୍ଥାନରେ । ଏହି ସୁନାମ ପ୍ରସିଦ୍ଧ ପଞ୍ଚସଖା ଯେପରି ପରସ୍ପର ସହଯୋଗୀ ଓ ସହଭାଗୀ ସେପରି ପ୍ରତ୍ୟେକେ ନିଜର ସ୍ୱତନ୍ତ୍ର ସ୍ୱଗୁଣରେ ସୁମହାନ୍ ଓ ସୁପ୍ରତିଷ୍ଠିତ । ଆଚାର୍ଯ୍ୟ ମହାଶୟଙ୍କ ଆଣ୍ଠୁଲୁଗି ସାଦା ଖଦୀ ଧୋତି ଚଦର ଦେଖି କେହି ଭାବିବେ ନାହିଁ ଯେ ଏ ନୀରିହ ଅବଧାନ ଜଣକ ଆବାଲ୍ୟରୁ ଅବିଶ୍ରାନ୍ତ ସେବାଧର୍ମୀ ଅଭୟ ବିଲ୍ଲବୀ । ମହାତ୍ମାଗାନ୍ଧିଙ୍କର ଅହିଂସ ଅସହଯୋଗୀ ସୈନିକ ହେବା ପୂର୍ବରୁ ସେ ନାନା ପ୍ରକାର ସାମାଜିକ ବିଲ୍ଲବାତ୍ମକ କାର୍ଯ୍ୟ ସ୍ୱତଃ ପ୍ରବୃତ୍ତ ଭାବରେ କରୁଥିଲେ । ନୈଷ୍ଠିକ ଶାସନୀ ବ୍ରାହ୍ମଣ କୁଳରେ ଜନ୍ମି ସମାଜର ଚଳଣୀପ୍ରତି ଭ୍ରୂକ୍ଷେପ ନ କରି ଜାତିକୁଳ ଅଜଣା ତୀର୍ଥଯାତ୍ରୀଙ୍କ ଶବ ସଂସ୍କାର କରିବା କେତେବଡ଼ ଦୁଃସାହସ ଆଜିସୁଦ୍ଧା କେହି ଭାବିପାରିବେ ନାହିଁ । ଏହି ଗୁଣ ଯୋଗୁଁ ସେ ହରିଜନ ଆନ୍ଦୋଳନର ପୁରୋଧା ହୋଇ ପାରିଥିଲେ । ଓଡ଼ିଶା ପ୍ରାଦେଶିକ କଂଗ୍ରେସର ଦୀର୍ଘଦିନର ସଭାପତି ଥାଇ ମଧ୍ୟ ସେ କୌଣସି କ୍ଷମତା ପାଇଁ କେବେ ଲାଳାୟିତ ହୋଇ ନ ଥିଲେ । ସେ ପୁଣି ଥିଲେ ଲବଣ ସତ୍ୟାଗ୍ରହର ସେନାପତି, ପୁଣି କିଛି କାଳ ସମାଜ ପତ୍ରିକାର ସମ୍ପାଦକ ଓ ପରେ ଓଡ଼ିଶା ମୌଳିକ ଶିକ୍ଷା ପରିଷଦର ସଭାପତି

ଏବଂ ଭୂଦାନ ଯଜ୍ଞର ଅନ୍ୟ ସମସ୍ତଙ୍କ ଅପେକ୍ଷା ଓଡ଼ିଶାର ଦୀର୍ଘତମ ପଥର ପଦଯାତ୍ରୀ । ତେଣୁ ସେ ହୋଇପାରିଥିଲେ ଓଡ଼ିଶାର ଗାଁ ଗହଳରେ ସବୁଠାରୁ ଜଣାଶୁଣା ଆଚାର୍ଯ୍ୟ ବାବୁ । ଏହି ଆଚାର୍ଯ୍ୟ ବାବୁ ତାହାଙ୍କର Child's Eassy First Grammer ଯୋଗୁଁ ଯେପରି ଛାତ୍ର ମହଲରେ ସୁପରିଚିତ ସେହିପରି ଭଗବତ୍ ଗୀତା ଓ କେତେ ଖଣ୍ଡ ଉପନିଷଦର ଭାଷାନ୍ତର ଦ୍ୱାରା ବିଦ୍ୱାନ ମଣ୍ଡଳରେ ସୁବିଖ୍ୟାତ । ଆଶା କରାଯାଏ ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟ ଛାତ୍ର ଶିକ୍ଷକ ମଣ୍ଡଳୀ ଆଚାର୍ଯ୍ୟ ମହାଶୟଙ୍କର ଏହି ସବୁ ସତ୍କର୍ମାବଳୀ ଓ ତାଙ୍କର ସଦ୍‌ଗୁଣାବଳୀର ଅନୁସନ୍ଧାନୀ ହୋଇ ଅନୁସରଣ ପ୍ରୟାସୀ ହେଉଥିବେ ।

ଆଚାର୍ଯ୍ୟ ମହାଶୟଙ୍କର ନାମ ସହିତ ପରିଚୟ ବାଲ୍ୟଜୀବନରୁ ଘଟିଛି । ସତ୍ୟବାଦୀ ବକୁଳ ବନର ସୁନାମ ଜାଣି ବାପାଙ୍କ ଆତ୍ମୀୟମାନେ ସେଠାକୁ ପଢିବାପାଇଁ ପଠାଇବା କଥାବାର୍ତ୍ତା ହେଉଥିଲେ ମାତ୍ର ବିଦ୍ୟାଳୟ ହଠାତ୍ ଭାଙ୍ଗିଗଲା । ବରପାଲିରେ ମାଇନର ସ୍କୁଲରେ ପଢିବାବେଳେ ବନବିଦ୍ୟାଳୟର ଜଣେ ଛାତ୍ରଙ୍କୁ ସାଇକେଲରେ ବଲାଙ୍ଗିର ଯିବା ଆସିବା ବାଟରେ ହଷ୍ଟେଲରେ ଅଟକୁଥିବା ଦେଖୁଥିଲେ । ତାହାଙ୍କର ଚଳଣି ଶିକ୍ଷକଛାତ୍ର ସମସ୍ତଙ୍କୁ ମୁଗ୍ଧ କରୁଥିଲା । ସତ୍ୟବାଦୀ ବନବିଦ୍ୟାଳୟରେ ସୁଦୂର ବଲାଙ୍ଗିର ଓ ଏପରିକି ମୟୂରଭଞ୍ଜର ଛାତ୍ର ପଢୁଥିଲେ ଆଚାର୍ଯ୍ୟ ମହାଶୟଙ୍କ ଭୂଦାନ ପଦଯାତ୍ରାରେ ଅତ୍ୟନ୍ତ ଭକ୍ତି ଗଦଗଦ୍ ଚିତ୍ତରେ ଆଚାର୍ଯ୍ୟ ମହାଶୟଙ୍କୁ ଭେଟିବାକୁ ଆସୁଥିଲେ । ଆଚାର୍ଯ୍ୟ ମହାଶୟ ସମସ୍ତ ସମୟରେ ଅସ୍ପୃଶ୍ୟତା ନିବାରଣ, ଖଦୀ ପ୍ରଚାର ଆଦି କାମରେ ସମ୍ବଲପୁର ଆସିବା ଶୁଣୁଥିଲି କିନ୍ତୁ ତାଙ୍କୁ ଦେଖି ନ ଥିଲି । ସତ୍ୟାଗ୍ରହ ସମୟରେ ସ୍କୁଲ ଛାଡ଼ିବାକୁ ପଡିଥିଲା । ସତ୍ୟାଗ୍ରହ ପ୍ରତି ଆଗ୍ରହ ରଖୁଥିବାରୁ ଶିକ୍ଷକମାନଙ୍କ ପରାମର୍ଶରେ ବାପା ପାଠପଢା ଛଡାଇଥିଲେ । ୧୯୨୮ ରେ ମହାତ୍ମାଗାନ୍ଧୀ ପ୍ରଥମ ଥର ପାଇଁ ସମ୍ବଲପୁର ଆସି ଖଦୀ ବିକ୍ରୀ କରୁଥିଲେ ଓ ମୁଁ ସେହି ଦିନରୁ ୨୪ ବର୍ଷ ବୟସରେ ଖଦୀ ପିନ୍ଧିବା ଆରମ୍ଭ କଲି । ୧୯୪୯ରେ ମୌଳିକ ଶିକ୍ଷାରେ ଯୋଗଦେବା ଓ ୧୯୫୧ରେ ଭୂଦାନ ଯଜ୍ଞ ଆରମ୍ଭ ହେବାରୁ ଆଚାର୍ଯ୍ୟ ମହାଶୟଙ୍କର ସାହଚର୍ଯ୍ୟରେ ବରାବର ରହିବାକୁ ହେଲା । ଏହି ଅବସ୍ଥାରେ ସପରିବାର ତାହାଙ୍କର ଆତ୍ମୀୟ ଭାବରେ ତାହାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଲୁ । ପୁତ୍ରକନ୍ୟା ତାଙ୍କର କୋଳରେ ଖେଳିଲେ । ତାଙ୍କର ଦାଢି ଟାଣି ଖୁସି ହେଲେ । ପିଲାଏ ଦାଢି ଟାଣି ଯେତିକି ଆନନ୍ଦ ପାଉଥିଲେ ଆଚାର୍ଯ୍ୟ ମହାଶୟ ଦାଢି ଟଣାଇ ସେତିକି ଖୁସି ହେଉଥିଲେ, ଏହି ନିରହଂକାର ଋଷିଜନୋଚିତ ସ୍ନେହପ୍ରବଣ ଆଲିଙ୍ଗନ ଯେ ପାଇନାହିଁ ବା ଦେଖିନାହିଁ ସେହି ଦୃଶ୍ୟ ଅନୁଭବ କରିପାରିବେ ନାହିଁ । ଲେଖକ ଯେଉଁ ଆତ୍ମୀୟତା କଥା କହୁଛି ସେପରି ଆତ୍ମୀୟତା ଅନୁଭବ ପାଇବାର ଅନେକ ସହକର୍ମୀଙ୍କ ରହିଥିବ । କାରଣ ଆଚାର୍ଯ୍ୟ ମହାଶୟ ପାତ୍ରାପାତ୍ର ବିଚାରର ଉର୍ଦ୍ଧ୍ୱରେ ଥିଲେ । ବ୍ୟକ୍ତିର ମହାନତା ତାଙ୍କ ଦୈନନ୍ଦିନ କର୍ମରେ ପରିସ୍ଫୁଟ ହୁଏ ଓ ପରିପୁଷ୍ଟ ହୁଏ । ଆଚାର୍ଯ୍ୟ ମହାଶୟଙ୍କର ପ୍ରତ୍ୟେକ ଆଚାର ବିଚାର ତାହାଙ୍କର ମହାନ୍ ବ୍ୟକ୍ତିତ୍ୱର ପୁଷ୍ଟି ସାଧନ କରୁଥିଲେ ।

ଆଚାର୍ଯ୍ୟ ମହାଶୟଙ୍କ ସାନ୍ନିଧ୍ୟ ଲାଭ ପ୍ରତ୍ୟେକ କ୍ଷେତ୍ରରେ ଉତ୍ସାହ ବର୍ଦ୍ଧକ, ଶିକ୍ଷାପ୍ରଦ ଓ ବିକାଶ ସୂଚକ ଥିଲା । ପ୍ରତ୍ୟେକ ଘଟଣା ସ୍ମରଣୀୟ ଓ ମନନୀୟ । ୧୯୫୯-୬୦ର ଘଟଣା ଆଚାର୍ଯ୍ୟ ମହାଶୟ ପୂଜ୍ୟ ଗୋପବାବୁଙ୍କ ମୃତ୍ୟୁପରେ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ପଦଯାତ୍ରା କରିଥିଲେ ଓ ଅନେକ ସମୟରେ ତାଙ୍କ ସହିତ ମତେ ରହିବାକୁ ହେଉଥିଲା । ପଦଯାତ୍ରା ବାଲେଶ୍ୱରରୁ ଆରମ୍ଭ କରାଗଲା । ପୁରୀ ଜିଲ୍ଲାର କରଚୂଲୀରୁ ସେ ଯେତେବେଳେ ଗଞ୍ଜାମ ଜିଲ୍ଲାରୁ ଆରମ୍ଭ କଲେ ମୁଁ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ବୁଲିଥିଲି । ଗଞ୍ଜାମର ସମତଳ ଅଞ୍ଚଳରୁ ଗଞ୍ଜାମ ମାଳର ନାନା ଚିତ୍ତହାରିଣୀ ଅନୁଭୂତି ରହିଛି ଏଥିରୁ କିଛି ସର୍ବୋଦୟ ପତ୍ରିକାରେ ଭୂଦାନ ସ୍ମୃତି ଧାରାବାହିକ ଲେଖାରେ ପ୍ରକାଶ ପାଇସାରିଛି । ଗଞ୍ଜାମ ପଦଯାତ୍ରା ସମୟରେ ଗ୍ରୀଷ୍ମାବକାଶ ପଡ଼ିଲା ଓ ଲେଖକର ବଡ଼ପୁଅ ମିହିର ସେବାଗ୍ରାମରୁ ଆସି

ଆଗ୍ନୃଯ଼ୀ ମହାଶୟଙ୍କ ପଦଯାତ୍ରାରେ ଯୋଗଦେବାରୁ " ଜଣେ ଯାତ୍ରୀ " ପୁସ୍ତକ ତାଙ୍କ ଜୀବନ ଚରିତର କିୟଦଂଶ ଲେଖିବାର ଆରମ୍ଭ ସୂତ୍ର ମିଳିଗଲା । ଆଗ୍ନୃଯ଼ୀ ମହାଶୟ ତ ଋଷି ପ୍ରତିମ ମୁନି । ମୁନିଋଷିମାନେ ସାଧାରଣତଃ କମ କଥା କହନ୍ତି । ପୁଣି ନିଜ କଥା କହନ୍ତି ନାହିଁ । ମିହିର ପଦଯାତ୍ରାରେ ଯୋଗ ଦେବା ଦିନଠାରୁ ତାହାଙ୍କର ଚଳ-ବାଟର ଦ୍ୱିତୀୟ ଲଗୁଡ଼ିର କାମ କଲା । ଆଗ୍ନୃଯ଼ୀ ମହାଶୟଙ୍କ ବୟସ ଏହି ସମୟରେ ଅଶୀକୁ ପହୁଞ୍ଚିଲାଣି, ପୁଣି ଆଖିର ଦୃଶ୍ୟ ପ୍ରାୟ ଲୋପ ପାଇଆସିଥାଏ । ସେ ତାହାଣ ହାତରେ କାନ୍ଧ ପର୍ଯ୍ୟନ୍ତ ଉଚ୍ଚା ଖଣ୍ଡିଏ ବାଉଁଶ ବାଡ଼ି ବାମ ହାତରେ ଜଣକର କାନ୍ଧରେ ହାତ ରଖି ଚାଲନ୍ତି । ତାଙ୍କ ବାମ କାନ୍ଧରେ ଗୋଟିଏ ଥଳି ଝୁଲୁଥାଏ । ଏହାକୁ କାହାକୁ ଦିଅନ୍ତି ନାହିଁ । ମିହିର ଯାତ୍ରା ଆରମ୍ଭ ପୂର୍ବରୁ ଅଗ୍ନୃଯ଼ୀ ମହାଶୟଙ୍କ ଅଜାଣତରେ ଝୁଲାକୁ ନିଜ ଅଧିକାରରେ ରଖି କାନ୍ଧରେ ପକାଇବ । ପ୍ରଥମରେ ଆଗ୍ନୃଯ଼ୀ ମହାଶୟ ଅଭ୍ୟାସ ବଶତଃ ରଖିଥିବା ସ୍ଥାନରେ ଝୁଲା ଅଣ୍ଡାଳିବେ ଓ ମିହିର ହସୁଥିବ, ଅନ୍ୟମାନେ ଅଜାନାତଙ୍କର ଖେଳ ଉପଭୋଗ କରିବେ ପରେ ଅବଶ୍ୟ ଏହା ଅଗ୍ନୃଯ଼ୀ ମହାଶୟଙ୍କୁ ଆଉ ଖୋଜିବାକୁ ପଡ଼ିଲା ନାହିଁ । ରହଣୀ ସ୍ଥଳରେ ମିହିର ଆଗ୍ନୃଯ଼ୀ ମହାଶୟଙ୍କ ପ୍ରଣୀତ ଇଂରାଜୀ ବ୍ୟାକରଣ ଗୃହଲୋଡ଼ ଇଜି ଫାଷ୍ଟ ଗ୍ରାମାର ବହି ନେଇ ନିଜର ଶଙ୍କା ଦୂରପାଇଁ ପ୍ରଶ୍ନ-ମାନ ସମାଧାନ କରାଇ ନେଉଥାଏ । ଦିନେ ସେ କହିଲା "ଆଗ୍ନୃଯ଼ୀ ମହାଶୟ, ଆପଣ ଜଣେ ଘୋର ଗାନ୍ଧୀ ଲୋକ" । ଆଗ୍ନୃଯ଼ୀ ମହାଶୟ ତାହାଙ୍କର ସ୍ୱଭାବ ସୁଲଭ କୋମଳ ଧୀର ସ୍ୱରରେ କହିଲେ, କ'ଣ ହେଲା କରେ ? ତୁ ଗାନ୍ଧୀ ବୋଲି କେମିତି ଜାଣିଲୁ—

ମିହିର — ଆପଣ ବ୍ୟାକରଣ ବହିର ବିଶେଷଣ ପାଠ ପ୍ରକରଣରେ ଲେଖିଛନ୍ତି— ହରି ଇଜ ଏ ଗୁଡ଼ ବଏ, (Hari is a good boy) । ଅଗ୍ନୃଯ଼ୀ ମହାଶୟ —ଆଉ କଣ ବେଡ଼ ବଏ (Bad boy) ହୋଇ ଥାନ୍ତି କରେ ? ମିହିର—ଆଚ୍ଛା ଆପଣ ଯଦି ଭୁଲ୍ ବଏ ମୁଁ ଯାହା ପଚାରିବି ପରିଷ୍କାର ଭାବରେ କହିବେ । ଅଗ୍ନୃଯ଼ୀ—ହଉ ପଚାରିଲେ କହିବି ।

ଏହିଠାରୁ ଆରମ୍ଭ ହେଲା 'ଜଣେ ଯାତ୍ରୀ' ବହିର ନୋଟ ଲେଖା । ଶ୍ରୀମାନ୍ ଅନାଦି ନାୟକ ପାଖରେ ରହି ଯାହା ଆଗ୍ନୃଯ଼ୀ ମହାଶୟ କହିବେ ତାକୁ ଟିପି ରଖିବେ । ଅନାଦି ଥିଲେ ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଛାତ୍ର ଓ ମୁଁ ସେହି ସମୟରେ ସେଠାରେ ଶିକ୍ଷକତା କରୁଥିଲି । ମିହିର, ଅନାଦି ଉଭୟେ ସ୍କୁଲ ସହପାଠୀ । ଅନାଦି ଅବଶ୍ୟ ବୟସରେ ବଡ଼ ଓ ବଡ଼ ଶ୍ରେଣୀରେ ପଢୁଥିଲେ । ବର୍ତ୍ତମାନ ସେ ଆମେରିକାରେ, ଏକ ପ୍ରକାର ସ୍ଥାୟୀ ବାସିନ୍ଦା । ଆମେରିକାରେ ବିବାହ କଲେ । ମିହିର ୧୯୫୫ର ଦଲାଇ ଘାଇ ଉଚ୍ଚା ବନ୍ୟାପରେ ଆଉ ବାପା ରାମଚନ୍ଦ୍ରପୁର ନ ଫେରି ଓ୍ୱାର୍କ-ସେବା ଗ୍ରାମକୁ ଗଲା ଓ ବର୍ତ୍ତମାନ ସେ ମହାରାଷ୍ଟ୍ର ରାଜ୍ୟର ନାଗପୁରର ସ୍ଥାୟୀ ଅଧିବାସୀ ହେଲାଣି । ଏହି ପ୍ରସଙ୍ଗକୁ ଟିକିଏ ବିସ୍ତାରିତ କରି ଲେଖିବାର ଉଦ୍ଦେଶ୍ୟ ହେଲା ଏହି 'ଜଣେ ଯାତ୍ରୀ' ପୁସ୍ତକ ଖଣ୍ଡିକ ପଢ଼ି ଆଗ୍ନୃଯ଼ୀ ମହାଶୟଙ୍କ ବିଷୟରେ ଜାଣିବା ପାଇଁ ଅଗ୍ନୃଯ଼ୀ ହରିହର ମହା ବିଦ୍ୟାଳୟର ଛାତ୍ର-ଛାତ୍ରୀଙ୍କ ଯତ୍ର କଣ୍ଠିତ ଆଗ୍ରହ ଜନ୍ମାଇବା । କେହି ଏହାକୁ ଧୃଷ୍ଟତା ମନେ କଲେ ନିଜ ଉଦାର ଗୁଣରେ କ୍ଷମା ଦେବେ ବୋଲି ନମ୍ର ନିବେଦନ କରେ ।

ଆଗ୍ନୃଯ଼ୀ ହରିହର ମହାବିଦ୍ୟାଳୟ ବିଷୟରେ ପଦେ ଘାଇବା ଆଗରୁ ଜଣା ନ ଥିବାରୁ, ପଦେ ପାଇ ଆଶ୍ଚର୍ଯ୍ୟ ହେବାକୁ ହେଲା । ଭୁବନେଶ୍ୱରରେ ଅଗରୁ ଖଣ୍ଡିଏ ବସ୍ତିକୁ ଆଗ୍ନୃଯ଼ୀ ବିହାର ନାମରେ ନାମିତ କରାଯାଇଛି । ଆଗ୍ନୃଯ଼ୀ ବିହାରରେ ଘଟୁଥିବା ଅଘଟଣ ନେଇ ସମୟ ସମୟରେ ସଂବାଦଗାନ ପରିବେଷିତ ହେଉଛି । ଆଗ୍ନୃଯ଼ୀ ମହାଶୟଙ୍କ ନାମ ମହାତ୍ମ୍ୟ ବିହାର ବାସୀଙ୍କ ଉପରେ କିଛି ପ୍ରଭାବ ପକାଉ ନାହିଁ । ବାଟ, ବିଦ୍ୟାଳୟ ତଥା ବହୁ ପ୍ରକାର ଧାର୍ମିକ ଅନୁଷ୍ଠାନମାନଙ୍କର ନାମ କରଣ ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ କରାଯାଉଛି ସତ, କିନ୍ତୁ ସେହି ନାମର ବ୍ୟକ୍ତି

ବା ଅନୁଷ୍ଠାନରେ ନାମିତ ବ୍ୟକ୍ତି ବିଶେଷଙ୍କର କୌଣସି ଗୁଣଗ୍ରାମ ପ୍ରକାଶ ପାଉନାହିଁ । ତେଣୁ ଏପରି ନାମକରଣରେ କୌଣସି ସାର୍ଥକତା ରହୁ ନାହିଁ । ଯେଉଁ ବିଶିଷ୍ଟ ସୁଗୁଣେ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ନାମରେ ଅନୁଷ୍ଠାନ ନାମିତ ହୋଇ ଥାଏ ସେହି ନାମରେ ଅନୁଷ୍ଠାନକମାନେ ଅନୁପ୍ରାଣିତ ହେବେ ବୋଲି ଆଶା କରିବା ସ୍ୱାଭାବିକ । ଏପରି ଆଶା ପୋଷଣ ଅତ୍ୟଗ୍ରହନୁହେଁ ବରଂ ବାସ୍ତବ ସତ୍ୟାଗ୍ରହ ଅଟେ । ସାର୍ଥକ ଅସାର୍ଥକ ନାମକରଣରେ ଫଳଶ୍ରୁତି ନେଇ ଅନେକ ଉଦାହରଣ ରହିଛି । ଲେଖିଲେ ଲେଖା ଶେଷହେବନାହିଁ । ତେବେ ଜଣାଶୁଣା କେତୋଟି ଘଟଣା ପ୍ରତ୍ୟକ୍ଷ ଅନୁଭୂତର ଲେଖୁଛି । ଥରେ ସମ୍ବଲପୁରରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରମାଦେବୀ ମହିଳା କଲେଜର ଜଣେ ଅଧ୍ୟାପିକାଙ୍କ ସହ ଆସିବା ସମୟରେ ନାନା ଭାବାଳାପ ମଧ୍ୟରେ ଜଣାଗଲା ଯେ ଛାତ୍ରୀଙ୍କ କଥା ଛାଡ଼ନ୍ତୁ ଅନେକ ଅଧ୍ୟାପିକା ନାମ ବ୍ୟତୀତ ରମାଦେବୀଙ୍କ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ବା ଜାଣିବାରେ ଆଗ୍ରହୀ ମଧ୍ୟ ନୁହନ୍ତି । ସତ୍ୟବାଦୀଠାରେ ଯେତେବେଳେ ମହାବିଦ୍ୟାଳୟ ଆରମ୍ଭ ହେଲା ଉଦ୍ୟୋକ୍ତାମାନଙ୍କୁ ଅନୁରୋଧ କରି ଲେଖିଥିଲି ଯେ ମହାବିଦ୍ୟାଳୟରେ ଆଦର୍ଶ ପଞ୍ଚସଖା କାଳୀନ ବକୁଳ ବନ ବିଦ୍ୟାଳୟ ଆଦର୍ଶର ପୃଷ୍ଠଭୂମିକୁ ଲକ୍ଷ୍ୟରେ ରଖାଯାଉ । ଜଣେ ବନ୍ଧୁ ବ୍ୟତୀତ ଅନ୍ୟମାନେ କେହି ଉତ୍ତର ମଧ୍ୟ ଦେଲେ ନାହିଁ । ସେପରି ଗୋପବନ୍ଧୁ ଚୌଧୁରୀ ନାମରେ ରାମଚନ୍ଦ୍ରପୁରରେ ମହାବିଦ୍ୟାଳୟ ପ୍ରତିଷ୍ଠା କାଳରେ ଗୋପବାବୁଙ୍କ ପ୍ରିୟ କାର୍ଯ୍ୟ କୃଷି-ଗୋପାଳନ ଭିତ୍ତିକ ଗ୍ରାମ ରଚନାକୁ ଅଗ୍ରାଧିକାର ଦେଲେନାହିଁ । ମହାମନା ମଦନ ମୋହନ ମାଳବ୍ୟ କେତେ ଉଚ୍ଚ ଆଶା ପୋଷଣ କରି ହିନ୍ଦୁ ବିଶ୍ୱବିଦ୍ୟାଳୟ ବନାରସରେ ସ୍ଥାପନ କରିଥିଲେ । ମାତ୍ର ଗୋଟିଏ ସର୍ବେକ୍ଷଣରୁ ଜଣାଯାଏ ଯେ ସେଠାରେ ଶତକରେ ସତଚାଳିଶ ଛାତ୍ର ନିଶା ସେବନ କରନ୍ତି । ନାନା ଆପତ୍ତି ସତ୍ତ୍ୱେ ଗାନ୍ଧୀଜୀଙ୍କର ଅନ୍ତିମ ଜୀବନରେ ବାପୁସ୍ଥଳୀ ସେବା ଗ୍ରାମରେ ମେଡ଼ିକାଲ କଲେଜ ସ୍ଥାପନକରି ପ୍ରାକୃତିକ ଚିକିତ୍ସାଳୟ ପାଇଁ ଅନେକ ଆଗ୍ରହ ପ୍ରକାଶ କରିଥିଲେ । କିନ୍ତୁ ଉଦ୍ୟୋକ୍ତା ମହାଶୟମାନେ ଗାନ୍ଧିଜୀଙ୍କର ଅତି ନିକଟତମ ଅନୁଯାୟୀ ଭାବରେ ଗାନ୍ଧୀ ଆଦର୍ଶକୁ ଅକ୍ଷୁର୍ଣ୍ଣ ରଖିବା ଚେଷ୍ଟା କରି ମଧ୍ୟ ସେହିଠାରୁ ନାହିଁ । କେବଳ ଛାତ୍ରାବାସର ଅନ୍ତେ ବାସୀଗଣ ସନ୍ଧ୍ୟା ପ୍ରାର୍ଥନା, ଛାତ୍ରାବାସରେ ଥିବା ସମୟରେ ନିରାମିଷ ଭୋଜନ ଓ ଛାତ୍ର ଅଧ୍ୟାପକ ଆଦି କର୍ମକର୍ତ୍ତାଗଣ କାର୍ଯ୍ୟକାଳ ଅବଧିରେ କଲେଜରେ ଥିବା ବେଳେ ଖଦୀପୋଷାକ ପରିଧାନ କରନ୍ତି । ଧର୍ମକୁ ଆଖିଠାରେ ନ୍ୟାୟରେ । ଖଦୀପରିଧାନ ଓ ନିରାମିଷ ଭୋଜନ ଅର୍ଥନୀତି ବା ଗାନ୍ଧିଜୀଙ୍କ ଅହିଂସା ନୀତିର କୌଣସି ସଂପର୍କ ନାହିଁ । ଆଚାର୍ଯ୍ୟ ମହାଶୟ ନିଜ ହାତକଟା ସୂତା ତିଆରି ଲୁଗା କେବଳ ପିନ୍ଧୁଥିଲେ । ଥରେ ତାହାଙ୍କର ପିନ୍ଧା ଲୁଗା ସମ୍ପୂର୍ଣ୍ଣ ଭାବରେ ଚିରିଯିବା ପୂର୍ବରୁ ତନ୍ତି ସୂତା ନେଇ ଲୁଗାବୁଣି ଆଣି ନ ଦେବାରୁ ସେ ଠିକ୍ କରିନେଲେ ଯେ ବରଂ ଲେଙ୍ଗୋଟି ମାରିବେ ସିନା ନିଜ ହାତ କଟା ସୂତା ବୁଣା ଲୁଗା ନ ହେଲେ ସେ ପିନ୍ଧିବେ ନାହିଁ । ଏହାକୁ ହିଁ କୁହାଯାଏ ବ୍ରତନିଷ୍ଠା । ସଂକଳ୍ପ ଥରେ କରାଯାଏ । ବାର ବାର ନାହିଁ । ଦେଶର ମନ୍ତ୍ରୀମାନେ ନେଉଥିବା ଶପଥ କିପରି ରକ୍ଷା କରୁଛନ୍ତି ତାହା ସମସ୍ତଙ୍କୁ ଜଣା । ଆମେ କଣ ଆଶା କରିବା ଯେ ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ ନାମିତ ଅନୁଷ୍ଠାନର ଏକ ବ୍ୟତିକ୍ରମ ରୂପେ ଗଢିଉଠିବ ଓ ଆଚାର୍ଯ୍ୟ ମହାଶୟଙ୍କର ଗୁଣ ଗ୍ରାମର ଅନୁସରଣ ଓ ଅନୁକରଣ କରିବ ? ଆସ୍ତିକ ସର୍ବଦା ଆଶାବାଦୀ । ଆସ୍ତିକ ଆଶାରେ ବଞ୍ଚି ରହେ ।

ଋଷି ପ୍ରତିମ ଆଚାର୍ଯ୍ୟ ମହାଶୟଙ୍କର ସେବା କ୍ଷେତ୍ର ଅତି ବ୍ୟାପକ । ଶ୍ମଶାନ ଘାଟରୁ ଗୀତା ପାଠ ପର୍ଯ୍ୟନ୍ତ ଜୀବନର ପ୍ରତ୍ୟେକ ବିଭାଗରେ ପରିବ୍ୟାପ୍ତ । ଶୂଦ୍ରର ସଫାଇ କର୍ମରୁ ଆରମ୍ଭ ହୋଇ ବ୍ରହ୍ମବର୍ଣ୍ଣର ସମସ୍ତ କର୍ମ ନେଇ ବ୍ରାହ୍ମଣର ଷଡ଼କର୍ମ ଦୈନ୍ୟନ୍ଦିନ କାର୍ଯ୍ୟ ନିର୍ଘଣ୍ଟରେ ସ୍ଥାନ ପାଉଥିଲା । ତେଣୁ ଯେକୌଣସି କର୍ମଜୀବୀ ତାହାଙ୍କର ଆଦର୍ଶରେ ନିଜକୁ ସତ୍ପଥରେ ରଖି ଚଳାଇ ନେବାରେ କିଛି ଅସୁବିଧା ଉପୁଜିବ ନାହିଁ । ସେ ଛାତ୍ର ହୁଅନ୍ତୁ ବା ଶିକ୍ଷକ ଅଧ୍ୟାପକ ହୁଅନ୍ତୁ କିମ୍ବା ଶ୍ରମିକ ବା କୃଷକ ହୋଇଥାନ୍ତୁ ସମସ୍ତଙ୍କ ପ୍ରତି ଗୋଟିଏ ଗୋଟିଏ ବାକ୍ୟରେ ଉପଦେଶ ଆଦେଶ ବା ଆଶୀର୍ବାଦ ହେଲା "ଭଲ ମଣିଷ ହୁଅ" । ଥରେ ଜଣେ କୃତ କର୍ମୀ ଇଂଜିନିୟର ପଚାରିଲେ ଭଲ ମଣିଷ ନ ହୋଇ ଇଂଜିନିୟର ହେବା କ'ଣ ଠିକ୍ ନୁହେଁ ? ଆଚାର୍ଯ୍ୟ ମହାଶୟ କହିଲେ ଭଲ ଇଂଜିନିୟର,

ଡ଼ାକ୍ତର ଅଧ୍ୟାପକ ହେବା ଭଲ ଯେ, ଭଲ ମଣିଷ ହୋଇ ଭଲ ଇଂଜିନିୟର ହେଲେ ମଣିକାଞ୍ଚନର ସଂଯୋଗ ହେବ ଭଲ ମଣିଷର ନାନା ସଂଜ୍ଞା ରହିଛି । ଭଲ ମଣିଷର ଗୁଣଗ୍ରାହିକ ଗୁଣବର୍ଣ୍ଣନ ନାନା ଭାବରେ ରହିଛି । ଭଲ ମଣିଷର ନିଷ୍ଠାପୂର୍ଣ୍ଣ କଥା ଓ କାର୍ଯ୍ୟରେ ସମାନତା ରହିବ । ଆଚାର୍ଯ୍ୟ ମହାଶୟଙ୍କଠାରେ ଏହାର ବ୍ୟତିକ୍ରମ ଘଟିବାର ଜଣାନାହିଁ । ସେ ଯାହା କହୁଥିଲେ ତାହା କରୁଥିଲେ ।

ଅନେକ ଶିକ୍ଷାକୁ ଭଲାପଣିଆର ମାପକାଠି ଭାବେ ଧରିନିଅନ୍ତି । ଶିକ୍ଷାର ଲକ୍ଷାଧିକ ସଂଜ୍ଞା ମଧ୍ୟରୁ ଗୋଟିଏ ଆବହମାନ କାଳରୁ ଏ ପର୍ଯ୍ୟନ୍ତ ସର୍ବସମ୍ମତ ସଂଜ୍ଞାଟି ହେଲା, ଯାହାର ଭଲମନ୍ଦର ବିଚାର ଓ ଭଲକୁ ଗ୍ରହଣ କରିବାର ଶକ୍ତି ଅଛି ତାକୁ ଶିକ୍ଷିତ କୁହାଯିବ । ଆଗରେ ଏତେ ସ୍କୁଲ ନ ଥିଲା ମାତ୍ର ଗାଁ ମାନଙ୍କରେ ଚାଟଶାଳୀ ଥିଲା । ଆମ ଗାଁରେ ଏପରି ଚାଟଶାଳୀଟିଏ ଥିଲା । ଖୋର୍ଦ୍ଧା ନିକଟର ବାଘମାରି ଗାଁର ଜଣେ ପଣ୍ଡିତ ସେଠାରେ ଅବଧାନୀ କରୁଥିଲେ । ମୋର ବଡ଼ମାମା (ପିତାମହୀ) ତାଙ୍କ ମତେ ସମର୍ପଣ କରି ଯାହା କହିଥିଲେ ତାହା ଏପର୍ଯ୍ୟନ୍ତ ମନେଅଛି । ବଡ଼ମାମା କହିଲେ ଗୁରୁ ମୋର ନାତିକୁ ପାଇଲ । ତାକୁ ଦୁଇ ଅକ୍ଷର ପଢାଇଦେଲେ ଗୀତାଭାଗବତ ପଢି, ଭଲମନ୍ଦ ଜାଣିପାରି ଭଲ ମଣିଷ ହେବ । ଶିକ୍ଷାର ଏହି ମୂଳ ଉଦ୍ଦେଶ୍ୟକୁ ଆଜି ବିଶ୍ୱକୋଷସଂଘ ମଧ୍ୟ ଗ୍ରହଣ କରୁଛି । ଆଜି ଅନେକ ବିଶ୍ୱବିଦ୍ୟାଳୟ ହେଲା । ମହାବିଦ୍ୟାଳୟ ପ୍ରତିବର୍ଷ ବଢୁଛି ଓ ଅନେକ ପାଠପଢୁଆ କୃତୀଗ୍ରୀନ୍ଦ ବାହାର ଦେଶର ସରକାରୀ ଓ ସରକାରୀ ସବୁ କ୍ଷେତ୍ରରେ କ୍ଷମତା ଜମାଇ ରହିଛନ୍ତି । ଆଇ. ଏ. ଏସ୍. ଅଫିସରମାନେ ନିଜକୁ ଦୁଧର ସରପରି ବିଶ୍ୱବିଦ୍ୟାଳୟ କ୍ରିମ (cream) ବୋଲି ଭାବୁଛନ୍ତି । ପାଠଶାଠରେ ଅଟନ୍ତି ମଧ୍ୟ । କିନ୍ତୁ ଏମାନଙ୍କର ଯଦି ଭଲମନ୍ଦ ବାଛି କାମ କରିବା ଶକ୍ତି ଥାନ୍ତା ଦେଶରୁ ଦୁର୍ନୀତି, ଅନୀତି, ଅନ୍ୟାୟ ଓ ନୈତିକତାର ଅନେକାଂଶ କମିଯାଆନ୍ତା । ଦୁଃଖର କଥା ଏହି ଆଇ. ଏ. ଏସ୍., ଆଇ. ପି. ଏସ୍. ମଧ୍ୟ ଦୁର୍ନୀତିଗ୍ରସ୍ତ ବୋଲି ଧରାପଡ଼ୁଛି । ଯେତିକି ଧରା ପଡ଼ୁଛି ତାହା ସମୁଦ୍ରରେ ଭାସମାନ ବରଫ ଖଣ୍ଡର ଚୂଳମାତ୍ର । ଏମାନେ କ'ଣ ଆଚାର୍ଯ୍ୟ ମହାଶୟଙ୍କ ଆଶୀର୍ବାଦ ଭାଜନ ହୋଇପାରିବେ ? ଥରେ ଉତ୍କଳର ମାନସିଂହ ଭୂଦାନ ଗ୍ରାମଦାନରେ କହିଥିଲେ ଯେ ଗ୍ରାମଦାନ ଦ୍ୱାରା ଗ୍ରାମର ଜମି ଗାଁର ହେଲେ ଶିକ୍ଷିତ ଲୋକେ ଗାଁକୁ ଆଦର ନ କଲେ ଗାଁର ଶିକ୍ଷାସଂସ୍କୃତିର କ୍ଷତି ଘଟିବ । ଆଚାର୍ଯ୍ୟ ମହାଶୟଙ୍କ ଜବାବ ଥିଲା ହଁ ପାଠୁଆ ଲୋକେ ଗାଁକୁ ଯାଇ ବିଡି, ସିଗାରେଟ, ଗୁଡ଼ାଖୁ ସହିତ ଲୁଙ୍ଗି ସଂସ୍କୃତି ସଙ୍ଗରେ ନେଇ ଗାଁ ଲୋକଙ୍କ ଜମିବାଡ଼ି ଘରଦ୍ୱାରକୁ କିଣିବା ଭିନ୍ନ ଗାଁର ଆଉ କ'ଣ ଉପକାର କରୁଛନ୍ତି ? ଏହି ପ୍ରଶ୍ନୋତ୍ତରଏ ପାଇ ମାନସିଂ ଆଉ ଆଗକୁ କଥା ବଢ଼ାଇଲେ ନାହିଁ ।

ଆଚାର୍ଯ୍ୟ ମହାଶୟଙ୍କ ସାହଚର୍ଯ୍ୟରୁ ମିଳିଥିବା ଅନେକ ସ୍ମୃତିକୁ ଲେଖିବାକୁ ଗଲେ କେବେ ଶେଷ ହେବନାହିଁ । ସେ ସଭାପତି ହୁଅନ୍ତୁ ବା ସେନାପତି ହୋଇଥାନ୍ତୁ ସେ ଥିଲେ ଜଣେ ସଚ୍ଚା ସେବକ । ଏହି ସେବାକାମ ପାଇଁ ଉତ୍କଳ ମହାବିଦ୍ୟାଳୟ ତାଙ୍କୁ ଡକ୍ଟରେଟ୍ ଦେବାକୁ ସ୍ଥିର କରିଥିଲେ । ମାତ୍ର ଆଚାର୍ଯ୍ୟ ମହାଶୟ ଏହି ଉପାଧିକୁ ଗ୍ରହଣ କଲେ ନାହିଁ । ତାଙ୍କୁ କାରଣ ପଚାରିବାରୁ ସେ କହିଥିଲେ ଯେ ପ୍ରଥମରେ ସବୁ ମା'ମାନଙ୍କୁ ଉପାଧି ଦେଇପାରିଲେ ତାଙ୍କୁ ଦିଆଯିବ । ସେ କୌଣସି ମା ଅପେକ୍ଷା ସମାଜର ବେଶୀ ସେବା କରିନାହାନ୍ତି । ଆଚାର୍ଯ୍ୟ ମହାଶୟଙ୍କର ବାପ ହେବାର ସୌଭାଗ୍ୟ ହେଲା ନାହିଁ ମାତ୍ର ସେ ଅସଂଖ୍ୟ ବ୍ୟକ୍ତିଙ୍କର ମା' ଥିଲେ । ତାହାଙ୍କର ଗ୍ରୁପବାତ୍ସଲ୍ୟ ମାତୃ ବାତ୍ସଲ୍ୟରୁ ଅଧିକ ନ ହେଲେ ମଧ୍ୟ ସମତୁଲ୍ୟ ଥିଲା । ମାତୃସ୍ନେହ ସଙ୍ଗେ ତୁଳନା କରିବା ପାଇଁ ଜଗତରେ ଆଉ କିଛି ନାହିଁ । ଦିନେ ଆଚାର୍ଯ୍ୟ ମହାଶୟ ପାଖ ଗାଁରୁ ଫେରି ଜାଣିଲେ ଯେ ପୀଡ଼ିତାବସ୍ଥାରେ ଜଣେ ଗ୍ରୁପଙ୍କୁ ନିକଟରେ ଥିବା ନିଜ ଗାଁକୁ ପଠାଇ ଦିଆଯାଇଛି । ଶୁଣିବାମାତ୍ରେ ଆଚାର୍ଯ୍ୟ ମହାଶୟ କାହାକୁ କିଛି ନ କହି ସେହି ଗାଁକୁ ଚାଲିଗଲେ । ପୀଡ଼ିତ ଗ୍ରୁପର ପିତାମାତା ରାତିରେ ବିଶ୍ରାମ ନେଲେ ସିନା ଆଚାର୍ଯ୍ୟ ମହାଶୟ ରାତିସାରା ଗ୍ରୁପର ମୁଣ୍ଡକୁ ନିଜ କୋଳରେ ରଖି ଜାଗିରହିଲେ ।

ସେ ଯେଉଁ ପଦ ପଦବୀରେ ଥାନ୍ତୁ ତାହାକୁ ମାତୃବତ୍ ସେବାବୃତ୍ତିରେ କରୁଥିଲେ । ମାନବିକତା ଥିଲା ତାହାଙ୍କର ସାଧ୍ୟ ଓ ସମଗ୍ର ମାନବ ସମାଜ ଥିଲା ତାହାଙ୍କର ସାଧନା । ସେ ନିୟମିତ ନାମଜପ ଓ ପ୍ରାର୍ଥନା କରୁଥିଲେ କିନ୍ତୁ ବ୍ରାହ୍ମଣର ଆଭିଜାତ୍ୟର ଚିହ୍ନ ଉପବୀତ ତ୍ୟାଗ କରିଥିଲେ । ବିଶ୍ୱମାନବିକତା ଥିଲା ପୂଜ୍ୟ ଆଚାର୍ଯ୍ୟ ମହାଶୟଙ୍କ ପରମ ଧର୍ମ । ଜ୍ଞାନ ଯୁକ୍ତ ଭକ୍ତିର ସାଣିତ ସେବାଧର୍ମର ସେ ଥିଲେ ନିଷ୍କାମ କର୍ମଯୋଗୀ । ଯେତେବେଳେ କଟକ ଭୁବନେଶ୍ୱର ଗଲେ ୧୯୬୭ ରୁ ୬୮ ମଧ୍ୟରେ ପୁରୀ ଯାଇ ପାଖରେ କିଛି ସମୟ ରହି ଆସୁଥିଲି । ପୁରୀର ହରଗୌରୀ ସାହିରେ ଗୋପବନ୍ଧୁ ଭବନରେ ସେ ରହୁଥିଲେ । ଏବଂ ସକାଳ ସନ୍ଧ୍ୟାରେ ଯେତେବେଳେ ଯେଉଁ ଭ୍ରମଣରେ ଯାଉଥିଲେ ସାହିର ଆବାଲ ବୃଦ୍ଧ ବନିତା ଘରୁ ବାହାରି ତାଙ୍କର ଦର୍ଶନ କରୁଥିଲେ, ସାନ ପିଲାଏ ପଛରୁ ଡ଼ାକି ଗୋଡାଇ ଗୋଡ଼ାଇ ନମସ୍କାର ହେଉଥିଲେ, କିଏ ପାଦ ଛୁଇଁ ମୁଣ୍ଡିଆ ମାରୁଥିଲେ । ଗୋଟିଏ ସ୍ଥାନରେ ମୁଁ କାହିଁକି ଆଚାର୍ଯ୍ୟ ମହାଶୟଙ୍କ ପାଖକୁ ଯାଏଁ ତାର ଉତ୍ତରରେ କହିଥିଲି ଯେ ଅନ୍ତରର ବେଟେଙ୍କୁ ଶଗୃର୍ଯି କରିବାକୁ ଯାଇଥାଏଁ । ଶୁଣିବା ଲୋକେ ସ୍ତମ୍ଭୀଭୂତ ହେଲେ, ଏବଂ ଶେଷରେ ଉପସଂହାରରେ ପୁଣି ଆଶାସ୍ୱୀ ହୋଇ ଲେଖିଛନ୍ତି ଯେ ତାଙ୍କ ନାମରେ ନାମିତ ମହାବିଦ୍ୟାଳୟରୁ ବର୍ଷାନୁବର୍ଷ ଉତ୍ତୀର୍ଣ୍ଣ କୃତୀଛାତ୍ରଗଣ ଯେଉଁ କାର୍ଯ୍ୟରେ ଥାନ୍ତୁ ତାହାଙ୍କର ଆଦର୍ଶରେ ଅନୁପ୍ରାଣିତ ଓ ତାହାଙ୍କର ଶୁଭାଶିଷରେ ଜଣେ ଜଣେ ଭଲ ମଣିଷ ହୋଇ ରହି ଅମଣିଷିଆ ବହୁଳ ଇଣ୍ଡିଏନମାନଙ୍କୁ ମଣିଷ କରନ୍ତୁ । ଦେଶ ଗୋଟିଏ ମାତ୍ର ସ୍ୱାଧୀନତା ପରେ କାଢଣ୍ଟା ଦୁଇଭାଗରେ ବିଭାଜିତ ହୋଇ ଯାଉଛି । ମୁଷ୍ଟିମେୟ ସହରୀ ସାକ୍ଷର ସହକାରୀ କର୍ମକର୍ତ୍ତା, କର୍ମଚାରୀ ଓ ବ୍ୟବସାୟୀ ହେଉଛନ୍ତି ଇଣ୍ଡିଏନ ଏବଂ ଗାଁ ଗହଳର ତଥା ସହର ତଳିର ଖଟିଖିଆ କୃଷକ ଶ୍ରମିକ ହେଉଛନ୍ତି ଭାରତୀୟ । ଭାରତର ଉନ୍ନତ ପ୍ରଗତ ଓ ମୁକ୍ତ ଭାରତୀୟ ଭାବରେ ହେବ ଯେଉଁଥି ପାଇଁ ଆଚାର୍ଯ୍ୟ ମହାଶୟ ସଂପୂର୍ଣ୍ଣ ଅସମର୍ଥ ନ ହେବାପର୍ଯ୍ୟନ୍ତ ଗ୍ରାମେ ଗ୍ରାମେ ବୁଲି ଶୋଷଣହୀନ ଶାସନ ମୁକ୍ତ ସମାଜ ରଚନା ପାଇଁ ଲୋକଙ୍କୁ ବୁଝାଇ ଥିଲେ । ସେହି କାମ ବର୍ତ୍ତମାନର ଯୁବ ସମାଜ ପାଇଁ ବାକି ରହିଛି । ଖଟିଖିଆ ଭାରତୀୟଙ୍କୁ ଲୁଟିଖିଆ ଇଣ୍ଡିଏନମାନେ ଶୋଷଣ ପାଇଁ ଶାସନ କରୁଛନ୍ତି । ଆଚାର୍ଯ୍ୟ ମହାଶୟଙ୍କ ପ୍ରିୟ ଅପୂର୍ଣ୍ଣ କାମକୁ ପୂର୍ଣ୍ଣ କରିବା ବ୍ୟକ୍ତି ନିଶ୍ଚୟ ତାହାଙ୍କର ଆଶିଷ ଲାଭ କରି ଭଲ ମଣିଷ ହେବ ।

—o—

# ଆଚାର୍ଯ୍ୟ ହରିହର

ଶ୍ରୀ ରାଧାମୋହନ ଗଡ଼ନାୟକ

ଆଖିକି ତାହାର ଦିଶୁନାହିଁ ଆଉ
ତଥାପି ତାହାର ଏଡ଼େ ଚାଡ଼
ଚାଲି ଚାଲି ସିଏ ଯାତ୍ରା ରଚୁଛି
ନୂଆ ଦୁନିଆର ବୁଢ଼ା ସାଥି ।

ହାତରେ ଧରିଛି ବାଡ଼ି ଖଣ୍ଡିଏ
କାନ୍ଧରେ ଝୁଲାଏ ମୁଣିଟିଏ ;
ସର୍ବୋଦୟର ପୂଜାରୀ ସିଏରେ
ସେବା ଧର୍ମର ମୂର୍ତ୍ତିଟିଏ ।

ଆପଣାର ଘର ଜାଳି ଦେଇ ସିଏ
ଝୁଲି ମୁଣିଟିରେ ଭରିଅଛି,
ଦୁନିଆର ସବୁ ଘର ନେଇ ସିଏ
ଆପଣାର ଘର କରିଅଛି ।

ନଈ ଯେଉଁ ଭଳି ବିଲ ବଣ ବୁଲି
ଜଳ ନେଇ ନେଇ ଚାଲିଥାଏ,
ସ୍ନେହ ଦେଇ ଦେଇ ଚାଲିଅଛି ସିଏ
ସହରେ ସହରେ ଗାଁଏଁ ଗାଁଏଁ ।

ସତ୍ୟବାଦୀର ବଉଳ ବଣରେ
ଗୁରୁ ହୋଇ ସିଏ ପ୍ରାଣେ ପ୍ରାଣେ,
ଜ୍ଞାନର ବାରତା, ହୃଦୟର କଥା
କହିଦେଉଥିଲା କାନେ କାନେ ।

ସେବାର ଜୀବନ, ଦେବାର ଜୀବନ
ନେଇଅଛୁ ଆଜି କେତେ ମତେ
ସଳିତା ପରିଏ ନିଜେ ଜଳି ଜଳି
ଆଲୁଅ ବୁଣୁଛୁ ପଥେ ପଥେ

ଅଦ୍ଭୁତ ସେଇ ଆତ୍ମା ଆଜିରେ
ଆସିଛି ତୁମର ଦୁଆରକୁ;
ଭିତରେ କିଏରେ ବସିଅଛ ତୁମେ
ଚାଲି ଆସ ଟିକେ ବାହାରକୁ ।

ମୁଣିରୁ ତାହାର ଭସ୍ମ ନିଅରେ
ପାଦରୁ ନିଅରେ ଧୂଳିକଣା,
ଦୁନିଆ ଭିତରେ ଚାଲିବାକୁ ହେଲେ
ହେବନାହିଁ ଆଉ ବାଟବଣା ।

# ସତ୍ୟବାଦୀ ମହାବିଦ୍ୟାଳୟ ଓ ଆଚାର୍ଯ୍ୟ ହରିହର ଦାସ

ଡ଼କ୍ଟର ରବିନାରାୟଣ ଦାଶ
କ୍ୟୁରେଟର ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ଓଡ଼ିଶାରେ ପଞ୍ଚସଖା ରୂପେ ପରିଚିତ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହକର୍ମୀବୃନ୍ଦଙ୍କ ମଧ୍ୟରେ ଆଚାର୍ଯ୍ୟ ହରିହର ଦାସ ଅନ୍ୟତମ ଥିଲେ । ସେ ଥିଲେ ସତ୍ୟର ମୂର୍ତ୍ତିମନ୍ତ ଅବତାର । ଏହା ବ୍ୟତୀତ ଜଣେ ଶିକ୍ଷକ, ନିସ୍ୱାର୍ଥପର ସେବକ ଭୂଦାନ ନେତା, କଂଗ୍ରେସ ନେତା, ଇତ୍ୟାଦି ବହୁ ଭାବରେ ପରିଚିତ ହୋଇ ସେ ଓଡ଼ିଶାର ଜନଜୀବନକୁ ପ୍ରଭାବିତ କରୁଥିଲେ । ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବିହାର ବା ସ୍କୁଲରେ ଏକ ଶିକ୍ଷକ ଜୀବନ ଯାପନ କରି ସେ ଯେ ଲୋକଲୋଚନକୁ ଆସିଥିଲେ ଏପରି ନୁହେଁ । ଉପନିଷଦ୍‌ର ଓଡ଼ିଆ ଅନୁବାଦ କରି ସେ ଉପନିଷଦ୍‌ର ପାଠକୁ ଓଡ଼ିଶାର ଘରେ ଘରେ ପହଞ୍ଚାଇବା ନିମନ୍ତେ ଉଦ୍ୟମ କରିଥିଲେ । କିନ୍ତୁ ଏହି ଅନୁବାଦ ବହୁଦିନ ଯାଏଁ ପ୍ରକାଶିତ ହୋଇପାରି ନ ଥିଲା । ସେ ଦୃଷ୍ଟିରୁ ଦେଖିଲେ ସେ ଜଣେ ସଂସ୍କୃତ ସାହିତ୍ୟବିତ୍ ରୂପେ ମଧ୍ୟ ଗଣ୍ୟ ହୋଇପାରନ୍ତି । ସେତେବେଳେ ପଣ୍ଡିତ ନୀଳକଣ୍ଠ ଗୀତାର ଅନୁବାଦ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ବୈଦିକ ସାହିତ୍ୟ ଉପରେ ମନୋନିବେଶ କରିଥିଲେ । କିନ୍ତୁ ସତ୍ୟବାଦୀ ଗୋଷ୍ଠୀଙ୍କ ତରଫରୁ ବେଦର ଅନୁବାଦ କରାଯାଇଥିବା ଜଣାଯାଏ ନାହିଁ ।

ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲକୁ ଏକ ଆଦର୍ଶ ଶିକ୍ଷା ଅନୁଷ୍ଠାନରେ ପରିଣତ କରିବା ନିମନ୍ତେ ଭାରତର ବହୁ ଶିକ୍ଷାନୁଷ୍ଠାନ ସଂପର୍କରେ ତଥ୍ୟାଦି ସଂଗ୍ରହ କରୁଥିଲେ । ତାଙ୍କ ଆଗରେ ଆଦର୍ଶ ସ୍ୱରୂପ ପୁନାର ଡ଼େକାନ୍ କଲେଜ ରହିଥିଲା । ଏହା ବ୍ୟତୀତ ଶାନ୍ତିନିକେତନକୁ ଯାଇ ସେଠାରେ ପ୍ରଚଳିତ ପଦ୍ଧତି ସଂପର୍କରେ ସେ ଥରେ ପ୍ରତ୍ୟକ୍ଷ ଅନୁଭୂତ ଲାଭକରି ଫେରିଆସି ସତ୍ୟବାଦୀରେ କଲେଜଟିଏ ଗଢିବା ନିମନ୍ତେ ସଂକଳ୍ପ କରିଥିଲେ । ଏ ବିଷୟରେ ସେ ତାଙ୍କ ଦ୍ୱାରା ସମ୍ପାଦିତ ସତ୍ୟବାଦୀ ମାସିକ ପତ୍ରିକାରେ ପ୍ରକାଶ ମଧ୍ୟ କରିଥିଲେ । କିନ୍ତୁ ତାଙ୍କର ସେ ସ୍ୱପ୍ନ ସାର୍ଥକ ହୋଇପାରି ନ ଥିଲା, ଯଦିଓ ସତ୍ୟବାଦୀ ଏକ ଜାତୀୟ ସ୍କୁଲ ଓ ପରବର୍ତ୍ତୀ ଅବସ୍ଥାରେ ଜାତୀୟ କଲେଜ ରୂପେ କିଛି ଦିନ କାର୍ଯ୍ୟ କରିଥିଲା । ତେଣୁ ଗୋପବନ୍ଧୁଙ୍କ ସ୍ୱପ୍ନକୁ ରୂପ ଦେବାପାଇଁ ତାଙ୍କର ସହକର୍ମୀ ବୃନ୍ଦ ଚେଷ୍ଟା ଅବ୍ୟାହତ ରଖିଥିଲେ । ହୁଏତ ସେତେବେଳେ କଲେଜ୍ ଗଢିବା ଏକ ଜାତୀୟ ଆବଶ୍ୟକତା ଥିଲା ଓ ବିଭିନ୍ନ ସ୍ଥାନରେ ବିଶେଷତଃ କଟକରେ ଏଥିପାଇଁ ଉଦ୍ୟମ କରାଯାଇଥିଲା । ଏହି ଉଦ୍ୟମ ବେସରକାରୀ ସ୍ତରରେ ହେଉଥିଲା । ଉତ୍କଳଦୀପିକାର ତା ୧୪ । ୨ । ୧୯୨୦ ରିଖର ଏକ ସମ୍ବାଦରୁ ଏହାର ସୂଚନା ମିଳିଥାଏ । ପରେ ପ୍ୟାରୀମୋହନଙ୍କ ଶ୍ରାଦ୍ଧ ସଭାରେ କଲେଜଟିଏ କରିବାପାଇଁ ଏକ ପ୍ରସ୍ତାବ କରାଯାଇଥିବା ଦେଖାଯାଏ ।

ସତ୍ୟବାଦୀରେ କଲେଜ ଗଠନ ନିମନ୍ତେ ଗୋପବନ୍ଧୁଙ୍କ ଇଚ୍ଛାର ସାଥି ରୂପେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ନାମ ବିଶେଷ ଉଲ୍ଲେଖିତ ହୋଇଥାଏ । ସତ୍ୟବାଦୀରେ ଜାତୀୟମହାବିଦ୍ୟାଳୟ ଗଠନ ପରେ

ପଣ୍ଡିତ କୃପାସିନ୍ଧୁ ମିଶ୍ର ଏହାର ଅଧ୍ୟକ୍ଷ ପଦରେ ରହିଥିଲେ । ପଣ୍ଡିତ ଲିଙ୍ଗରାଜ ମିଶ୍ର ମଧ୍ୟ ନିଜର ସରକାରୀ ଚାକିରୀରେ ଜଳାଞ୍ଜଳି ଦେଇ ଏଠାରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । କିନ୍ତୁ ସେମାନେ ଥିଲେ ଉଚ୍ଚ ଶିକ୍ଷିତ ଏବଂ ଅଧ୍ୟାପକ ହେବାର ଯୋଗ୍ୟତା ସେମାନଙ୍କର ଥିଲା । ମାତ୍ର ଆଚାର୍ଯ୍ୟ ହରିହର ଦାସ ସେମାନଙ୍କ ଭଳି ଉଚ୍ଚ ଶିକ୍ଷିତ ନ ଥିଲେ । ଶିକ୍ଷାନୁଷ୍ଠାନ ସଂଗଠନରେ ତାଙ୍କର ବିଚକ୍ଷଣତା ମଧ୍ୟ ଥିବାର ପ୍ରମାଣ ଆମମାନଙ୍କ ପାଖରେ ବିଶେଷ ନାହିଁ ତଥାପି ସେ କଲେଜ ଗଠନରେ ବିଶେଷ ସହଯୋଗ କରିପାରିବାର ଆଶା କରାଯାଉଥିବା ମନେହୁଏ । ୧୯୨୦ ମସିହାର ପ୍ୟାରିମୋହନ ଶ୍ରାଦ୍ଧସଭା ଯେଉଁ କଲେଜ ପ୍ରସ୍ତାବ କରି କମିଟି ଗଠନ କରିଥିଲେ ସେଥିରେ ହରିହର ଦାସ ଜଣେ ସଭ୍ୟଥିଲେ । ସେତେବେଳକୁ ସେ ସତ୍ୟବାଦୀ ସ୍କୁଲର ଶିକ୍ଷକ । ତଥାପି ତାଙ୍କୁ ସେ କମିଟିରେ ସଭ୍ୟ ରୂପେ ଗ୍ରହଣ କରାଯାଇଥିଲା । ଏହି ସଭାରେ ସଭାପତିତ୍ୱ କରିଥିଲେ ଶ୍ରୀଯୁକ୍ତ ରାୟ ଜାନକୀ ନାଥ ବୋଷ ବାହାଦୁର ସନ୍ଧ୍ୟାରେ ପ୍ୟାରିମୋହନ ଏକାଡେମୀରେ ୧୯୨୦ ମସିହା ଜାନୁଆରୀମାସ ୩୧ ତାରିଖରେ ପ୍ରାୟ ୬୮ ବର୍ଷ ତଳେ ହୋଇଥିଲା । କମିଟିର ସଭାପତି ଥିଲେ ବ୍ରଜସୁନ୍ଦର ଦାସ । ଏମାନଙ୍କୁ ମିଶାଇ ବାରଜଣ ସଭ୍ୟ ସେହି କମିଟିରେ ରହିଥିଲେ । ସେହି ସଭାରେ ଛାତ୍ରମାନଙ୍କ ତରଫରୁ ଗୋଟିଏ ପ୍ରସ୍ତାବ କରାଯାଇଥିଲା ଯେ କଲେଜ ନିମନ୍ତେ ଏକ ସ୍ଥାୟୀ ପାଣ୍ଠି ରହିବ । ଆଚାର୍ଯ୍ୟ ହରିହର ସତ୍ୟବାଦୀ ସ୍କୁଲର ଶିକ୍ଷକ ଥିଲେ ମଧ୍ୟ ପ୍ୟାରିମୋହନ ଏକାଡେମୀରେ ପ୍ରସ୍ତାବିତ କଲେଜ କମିଟିର କାହିଁକି ସଭ୍ୟରୂପେ ନିଆଯାଇଥିଲେ ତାହାର ସୂଚନା ମିଳେନାହିଁ । ସମ୍ଭବତଃ ସେ ପ୍ୟାରିମୋହନ ଏକାଡେମୀରେ ତଥା କଟକର ବିଦ୍ୱାନ ମଣ୍ଡଳୀ ମଧ୍ୟରେ ତାଙ୍କ ପ୍ରତି ରହିଥିବା ସଦିଚ୍ଛା, ଉନ୍ନତ ବିଶ୍ୱାସବୋଧ ଓ ସମ୍ମାନ ହେତୁ ଏହା ସମ୍ଭବ ହୋଇଥିଲା । ଆଉ ମଧ୍ୟ ଗୋପବନ୍ଧୁଙ୍କ ଅନ୍ତରଙ୍ଗ ବନ୍ଧୁ ବ୍ରଜସୁନ୍ଦରଙ୍କ ଉପସ୍ଥିତି ଏହାର ଅନ୍ୟତମ କାରଣ ହୋଇପାରେ । ସେହିହେତୁ ସେ ଏ କମିଟିରେ ହୁଏତ ସଭ୍ୟରୂପେ ଗୃହୀତ ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ମଧ୍ୟ ଏହି ଉଦ୍ୟମକୁ ସମର୍ଥନ କରିଥିବା ଅସମ୍ଭବ ନୁହେଁ ।

ସତ୍ୟବାଦୀରେ ଜାତୀୟ କଲେଜ; କେତେକଙ୍କ ମତରେ ୧୯୨୨ ମସିହା ଜୁଲାଇ ମାସର ଆଦ୍ୟରେ ସ୍ଥାପିତ ହୋଇଥିଲା । ସମ୍ଭବତଃ ଏହି ସମୟରେ ପଣ୍ଡିତ କୃପାସିନ୍ଧୁ ବାହାଡାଗୋଡାରୁ ଆସି ଏହି ମହାବିଦ୍ୟାଳୟର ଅଧ୍ୟକ୍ଷ ରୂପେ ଯୋଗଦେଇଥିଲେ । ସେପ୍ଟେମ୍ବର ମାସ (୧୯୨୧ ମସିହାରେ) ପଣ୍ଡିତ ନୀଳକଣ୍ଠ ଜାତୀୟ କଲେଜରେ ଅଧ୍ୟକ୍ଷ ରୂପେ ଯୋଗଦେଇଥିବାର ସୂଚନା ପ୍ରଦାନ କରିଛନ୍ତି । କିନ୍ତୁ ସେ ସଂପର୍କରେ ସଠିକ ତାରିଖରେ ସୂଚନା ଅଦ୍ୟାବଧି ମିଳିନାହିଁ । ଏହି ପରିପ୍ରେକ୍ଷୀରେ ସତ୍ୟବାଦୀ ବିହାରର ଦାୟିତ୍ୱରେ ଖୁବ୍ ସମ୍ଭବତଃ ଆଚାର୍ଯ୍ୟ ହରିହର ହିଁ ରହିଥିଲେ । କାରଣ ଜାତୀୟ କଲେଜରେ ଶିକ୍ଷାଦାନ ନିମନ୍ତେ ଯୋଗ୍ୟତାର ମାପକାଠି କିଛି ନ ଥିଲା । ଏଠାରେ ସୂତାକଟା ଓ ଲୁଗାବୁଣା ପାଇଁ ମଧ୍ୟ ଅଧାପକ ନିଯୁକ୍ତ ହୋଇଥିବା ଜଣାଯାଏ । ଆଚାର୍ଯ୍ୟ ହରିହର କଣ ସେବା ନିମନ୍ତେ ଅଧ୍ୟାପନାର ଦାୟିତ୍ୱରେ ଥିଲେ ? ଉତ୍କଳ ଦୀପିକାର ତା ୬ । ୧୨ । ୧୯୧୯ ରିଖରେ ପ୍ରକାଶିତ ସଂଖ୍ୟାରେ ସାପ୍ତାହିକ ସମ୍ବାଦ ସ୍ତମ୍ଭରେ ବିହାର ଓଡ଼ିଶା ଗେଜେଟରୁ କିଛି ଅଂଶ ଛପାଯାଇଥିଲା । ସେଥିରୁ ଜଣାଯାଏ ଯେ କେତେକ ଭଦ୍ରଲୋକ ସତ୍ୟବାଦୀ ଡ୍ରିସ୍‌ପେନ୍‌ସରୀ କମିଟିର ମେମ୍ବର ନିଯୁକ୍ତ ହୋଇଥିଲେ । ଏଥିରେ ସରକାରୀ କର୍ମଚାରୀଙ୍କ ବ୍ୟତୀତ "ପଞ୍ଚମ ଓ ଷଷ୍ଠ ସଭ୍ୟ ଭାବରେ ଯଥାକ୍ରମେ ବାବୁ ନୀଳକଣ୍ଠ ଦାସ—ସତ୍ୟବାଦୀ ହାଇସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ ଓ ବାବୁ ହରିହର ଦାସ—ଏହି ସ୍କୁଲର ଶିକ୍ଷକ ରହିଥିଲେ । ସେତେବେଳକୁ ସମ୍ଭବତଃ ନୀଳକଣ୍ଠ ଦାସ "ପଣ୍ଡିତ" କିମ୍ବା ହରିହର ଦାସ "ଆଚାର୍ଯ୍ୟ ରୂପେ ପରିଚିତ ହୋଇ ନ ଥିଲେ, ଅଥବା ସରକାରୀ ବିଜ୍ଞପ୍ତିରେ ସେହି ଉପାଧିଗୁଡ଼ିକୁ ବାଦ୍ ଦିଆଯାଇଛି ତାହା ସଠିକ ଭାବରେ ଜଣାଯାଏ ନାହିଁ । ତେଣୁ ୧୯୨୧ ମସିହାରେ କିମ୍ବା ୧୯୨୨ ମସିହାରେ ଜାତୀୟ କଲେଜ ହେବାବେଳକୁ ସେ ସେଠାରେ ଅଧ୍ୟାପକ ରୂପେ କାର୍ଯ୍ୟରେ ଯୋଗଦେଇଥିବା ବିଚିତ୍ର ନୁହେଁ । କିନ୍ତୁ ସତ୍ୟବାଦୀ ସ୍କୁଲର ଦାୟିତ୍ୱ ସହିତ ସାମୟିକ ଭାବରେ ଅଧ୍ୟାପକ ରୂପେ ଆଚାର୍ଯ୍ୟ ହରିହର କାର୍ଯ୍ୟ କରିଥିବା ବିଶେଷ ଭାବରେ ଅନୁମିତ ହୋଇପାରେ ।

ଉପରୋକ୍ତ ଦୁଇଟି ଘଟଣାବଳୀ ବ୍ୟତୀତ ସତ୍ୟବାଦୀରେ କଲେଜ ଗଠନ ନିମନ୍ତେ ଯେଉଁ ଉଦ୍ୟମମାନ କରା-ଯାଉଥିଲା ତାହା ସାମୟିକ ସ୍ଫୁରଣ ଥିଲା । ସେଥିରେ ଆଚାର୍ଯ୍ୟ ହରିହର ଯୋଗ ଦେଇଥିବାର ସୂଚନା ଅତି ଅଳ୍ପ ବା ଆଦୌ ନ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ୧୯୬୩ ମସିହାରେ ସତ୍ୟବାଦୀରେ ଏକ ମହାବିଦ୍ୟାଳୟ ଗଠନ ନିମନ୍ତେ ପୂଜାଛୁଟିରେ ଯେଉଁ ବିଧିବଦ୍ଧ ସଭା ଅନୁଷ୍ଠିତ ହେଲା ସେଥିରେ ଆଚାର୍ଯ୍ୟ ହରିହର ସ୍ଥାୟୀ ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ସେଥିରେ ଯୋଗଦେବା ପୂର୍ବରୁ ଏକ ଆୟୋଜନ କମିଟି ବିଭିନ୍ନ କାର୍ଯ୍ୟ ପରିଚାଳନା କରୁଥିଲେ । ସେହି କମିଟିର କାର୍ଯ୍ୟପାଇଁ ସେ ସର୍ବଦା ଆଶୀର୍ବାଦ ପ୍ରଦାନ କରୁଥିଲେ । ସେ ଶେଷ ନିଶ୍ୱାସ ତ୍ୟାଗ କରିବା ଯାଏଁ ବର୍ତ୍ତମାନ ଗଢିଉଠିଥିବା ସତ୍ୟବାଦୀର ଗୋପବନ୍ଧୁ ସ୍ମୃତି ମହାବିଦ୍ୟାଳୟର ସଭାପତି ପଦରେ ଅଧିଷ୍ଠିତ ହୋଇଥିଲେ । ଏହି ଅବସରରେ କଲେଜ କମିଟିର ସଭ୍ୟମାନଙ୍କୁ ନିଷ୍ଠା ଓ ସାଧୁତା ପାଇଁ ସେ ବାରମ୍ବାର ଚେତାଇ ଦେଉଥିଲେ । ସେମାନଙ୍କ ସହିତ ସେ କେତେକ ସ୍ଥାନକୁ ଚାନ୍ଦା ସଂଗ୍ରହ କରିବାପାଇଁ ମଧ୍ୟ ଯାଇଥିଲେ । ସତ୍ୟବାଦୀ କଲେଜପାଇଁ ପ୍ରତ୍ୟେକ ମିଟିଂରେ ସେ ଯୋଗଦାନ କରୁଥିଲେ ଓ ନିର୍ଦ୍ଧାରଣମାନ ଲେଖାଯିବା ବେଳେ ସେଥିରେ ଆବଶ୍ୟକୀୟ ସଂଶୋଧନ ମଧ୍ୟ କରାଉଥିଲେ । ପଣ୍ଡିତ ନୀଳକଣ୍ଠ ଶେଷ ଶାଶ୍ୟା ଅବସ୍ଥାରେ ଶ୍ରୀରାମଚନ୍ଦ୍ରପୁରରେ ଘରେ ଅବସ୍ଥାନ କରୁଥିବା ବେଳେ କଲେଜ କମିଟିର ଏକ ସଭ୍ୟକୁ ଆଣି ସେ ତାଙ୍କୁ ଦେଖିବାକୁ ଯାଇଥିଲେ । ସେଠାରେ କଲେଜ କରିବା ଦିଗରେ କର୍ମୀମାନଙ୍କ ପ୍ରଚେଷ୍ଟାର ସୂଚନା ଦେଇ ଅତୀତରେ ଗୋପବନ୍ଧୁଙ୍କ ସ୍ୱପ୍ନ ସମ୍ପର୍କରେ ସେ କେତେକ କଥା ସ୍ମରଣ କରାଇଥିଲେ । ପଣ୍ଡିତ ନୀଳକଣ୍ଠ ବାଷ୍ପରୁଦ୍ଧ ଅଶ୍ରୁଳ ଚକ୍ଷୁରେ ତାହାର ଆବେଗମୟ ପରି-ପ୍ରକାଶ ଅଦ୍ୟାବଧି ରୋମାଞ୍ଚ ସୃଷ୍ଟି କରେ । ତାଙ୍କର ସେହି ଛବିର ସ୍ଥିତିରେ ବି ସେ କହି ଉଠିଥିଲେ "ମୁଁ ସର୍ବଦା ଆଶାବାଦୀ" । ଜରାର ସଂକ୍ରମଣ, ଶାରୀରିକ ଅକ୍ଷମତା, ଆଶା ଓ ଚିନ୍ତା ରାଜ୍ୟରେ ପରାଭୂତ ହୋଇଥିବା ସେଇଠି ଲକ୍ଷ୍ୟ କରାଯାଇଥିଲା । ଆଚାର୍ଯ୍ୟ ହରିହର କହିଥିଲେ "ବ୍ୟସ୍ତ କାହିଁକି ? ନିଶ୍ଚୟ ହେବ ।" ପାଖରେ ଉପସ୍ଥିତ ଥିବା ସର୍ବେଶ୍ୱର ଦାଶଙ୍କୁ ଦେଖାଇ ଦେଇ କହିଲେ "ସେ ପରା କାମରେ ଲାଗିଛି" । କେବଳ ଆଶାବାଦ ନୁହେଁ, ଧୈର୍ଯ୍ୟ ଓ ଦୃଢ଼ତାହିଁ ସେ ଆଶାର ଅନ୍ୟତମ ସହଚର ଭାବରେ ଆତ୍ମପ୍ରକାଶ କରିଥିଲା ।

ସତ୍ୟବାଦୀରେ ଏକ ମହାବିଦ୍ୟାଳୟର ସ୍ୱପ୍ନ ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଙ୍କ ମଧ୍ୟରେ ଏପରି ଆକାଂକ୍ଷିତ ଓ ଉନ୍ମାଦନାମୟ ଥିଲା କାହିଁକି ? ତାହାର ଉତ୍ତର ଅସମାହିତ ରହିଛି । ଶିକ୍ଷାର ଏକ ଛାପ ପକାଇବାରେ ସେମାନେ ବ୍ୟର୍ଥକାମ ହୋଇଥିଲେ । ଅଳ୍ପ ବୟସରେ କୃପାସିନ୍ଧୁଙ୍କ ଦେହାନ୍ତ, ଗୋପବନ୍ଧୁଙ୍କର ସତ୍ୟବାଦୀ ସ୍କୁଲ ଛାଡ଼ି ଦେଇ ଜାତୀୟ ଅସହଯୋଗ ଆନ୍ଦୋଳନରେ ଲମ୍ଫ ପ୍ରଦାନ ଏବଂ ତାଙ୍କ ଦେଖାଦେଖି ପଣ୍ଡିତ ନୀଳକଣ୍ଠ ଓ ଆଚାର୍ଯ୍ୟ ହରିହରଙ୍କର ସେଥିରେ ଯୋଗଦାନ ସମସ୍ତ ଶିକ୍ଷା କଳ୍ପନା ଓ ଆଦର୍ଶ ଅଧ୍ୟାପନ ପ୍ରଣାଳୀ ମୂଳରେ କୁଠାରାଘାତ କରିଥିଲା । ସେହି ବ୍ୟର୍ଥତାହିଁ ସେମାନଙ୍କ ସ୍ୱପ୍ନର ଏକ ପଶ୍ଚାତ୍ତାପ ଥିଲା । ତେଣୁ ସତ୍ୟବାଦୀରେ ମହାବିଦ୍ୟାଳୟର ଉଦ୍ୟମ ମୂଳରେ ସେମାନଙ୍କର ଭାବପ୍ରବଣତାହିଁ ରହିଥିଲା । ଆଚାର୍ଯ୍ୟ ହରିହର ସେହି ପରିପ୍ରେକ୍ଷୀରେ ସତ୍ୟବାଦୀ ମହାବିଦ୍ୟାଳୟ ଗଠନ ନିମନ୍ତେ ଆଗ୍ରହୀ ଓ ପ୍ରୟାସୀ ଥିଲେ ।

# ଧୂଳିମାଟିର ସାମ୍ରାଜ୍ୟକୁ ଅବନମି

( ଆଚାର୍ଯ୍ୟ ହରିହରଙ୍କ ଉଦ୍ଦେଶ୍ୟରେ )

ଡକ୍ଟର ନୀଳାଦ୍ରି ଭୂଷଣ ହରିଚନ୍ଦନ

ଅନ୍ୟକୁ ଅତିକ୍ରମ କରିଯିବାକୁ
କେଉଁ ଯାନ୍ତ୍ରିକ ମାଧ୍ୟମରେ ବା ଅଭାବ ଅଛି ?
ଅଥଚ ତୁମେ କାହାର ସାହାଯ୍ୟ ତ
ନେଇନାହିଁ, କୃପାପ୍ରାର୍ଥୀ ବି ହୋଇନାହିଁ
ସମସ୍ତଙ୍କୁ ଚମତ୍କୃତ କରିଦେଇ ଦେଖାଇ ଦେଇ
ପାଦରେ ଚାଲିଚାଲି
କିପରି ଅତିକ୍ରମ କରିହୁଏ
ଗୋଟାଏ ବିଶାଳ ବିଶୃଙ୍ଖଳିତର
ସୁବିଧାଭୋଗୀ ମଣିଷମାନଙ୍କୁ ।।

ଦ୍ରୁତଗତିରେ ଅନ୍ୟକୁ ଟପିଯାଇ
ଯାହାଙ୍କୁ ମିଳିଗଲା ବାଟରେ
ଗୋଟାଇ ପକାଇବାରେ ତ
ବ୍ୟସ୍ତ ରହିଗଲେ ସମସ୍ତେ

ତମେ କିନ୍ତୁ ଚାହିଁଲ ନାହିଁ କେଉଁ ଆଡ଼େ
କେଉଁଠି ଝଟକେ ଉଠୁଛି ରୂପାପଦ୍ମ କି ସୁନାପଦ୍ମ ।।

ଗୋଟାଏ ସ୍ଥିର ଲକ୍ଷ୍ୟ ଆଡ଼କୁ
ଆଗେଇଗଲ
ଅପ୍ରତିହତ, ନିରବଚ୍ଛିନ୍ନ, ନିର୍ବିକଳ୍ପ
ପଣ୍ଡିତ ଜନତା ମୁହଁର ଉଜ୍ଜ୍ୱଳ ଆଲୋକ ଭରା ଆକାଶ
କରିଛ ଭଳି ଧୀରେ ଧୀରେ ଚାଲି
ତମେ ହିଁ ଜିତିଗଲ ସମସ୍ତଙ୍କୁ
ଅବନମି ଗଲ ସମସ୍ତଙ୍କୁ ।।

ପଛରେ ରହିଗଲେ ହା ହାକାର କରିବାକୁ
କେତେଜଣ ସମ୍ରାଟ୍
ଧୂଳିମାଟିର ସାମ୍ରାଜ୍ୟକୁ ଜାବୁଡ଼ି ଧରି ।।

— ୦ —

# Guardian-Response to Higher Secondary and College Education in Bhubaneswar:A survey

**Tilottama Senapati**
Research Scholar,AHEDS

"Education is the all round development drawing out the best in human Child" —said Gandhiji, It connotes the development of all aspects physical, mental, Social emotional & intellectual life of the child and his/her personality.This is thebroader concept of Education which provides scope for uptimum growth and development of individual personality through formal,informal and non-formal education. Mostly people conceive formal education as the real education,because it imparts specific, pre-planned, goal-oriented education. But the emphasis and importance given to different levels,e.g.Primary Secondary, Higher Secondary and college education is not of equal weightage for all concerned. Primary education is accepted as the basic and fundamental education imparting information and instruction for life and furthering the cause of education. Higher secondary education is mainly conceived as the education that prepare learners to be better citizens and establish themselves socially, choosing a suitable vocation in life. Though the higher secondary and college education serve many vital societal purposes, parents normally send their children to the colleges with a view to train their children with adequate information and knowledge for a good professional career and develop a good moral character. How for do they succeed ? what do the parents expect the institutions to provide ? Some of these questions needs to be explored. Along side these questions, one may ask "how far the knowledge gained is helpful to them for character building, social service and in finding out gainful employment ?

Keeping in view these questions, a survey of guardian-response to higher secondary and cóllege education was conducted in Buhbaneswar over a population

---

* I am thankful to Smt. Annapurna Misra, formerly Vice-Principal, Nalini Devi College of women's Education, who initiated the preject and Dr. Bhabagrahi Misra President, AHEDS who guided me in the analysis and presentation of this paper.

of 500, selected on random Sampling basis, taking into consideration differance in Socio-economic background of the respondents. The survey was completed in 1986-87 Out of the targeted population of 500, i,e, 67% responded to the questionnaire served through the students of Acharya Harihar Mahavidyalaya. The percentage of women responding to the questionnaire is only 3.88%. However the information received from them supplements findings from the rest of the population.

In the sample, 135 respondents (40.3%) are in the age-group of 41 to 50, constituting the largest group of the total, 251 (74.93%) are employed and 192 (65.98%) were within the income range below Rs. 1000/- per month. This sampling suggests that the survey covered people, belonging to different socio-economic background randomly selected.

The attitude of the respondents could easily be judged from their family background,hobby, associational ties (religious, cultural/educational). The survey reflects that the parents are very much conscious and concerned about the education of their family members. Most of them have developed a hobby for music, newspaper reading, gardening, stamp collecting, playing, travelling and social work, which indicated the use of lisure time properly. It is interesting to note that out of the 335 respondents, only 5% have any strong association/ties with cultural organisations like, JAS club, chitrakala, Amala Sangha, Divinelife society, Chitrakuta Math, Sivananda Sanskrutika Kendra etc. very few (only 9) respondents are associated with educational institutions. It reflects minimal organisational/doctrimnaive influence on them.

15.52% of the respondents do not like the present system of college and higher secondary education, as the "system is defective", "unrelated to life", not vocational in nature.' Inspite of their dislikes, they do not have any alternative choice, so they send their children to college and Higher secondary education (187 of the respondents, i,e. 55.82%). It reflects that the expectation of the guardians are rarely satisfied by the colleges and Higher secondary institutions in Bhubaneswar the state capital of Otissa.

In tabulating their responses it is found that 36.32% wants to see "better teaching methods", 35.22% in favour of "regular classes", 20.6 % favour more" periodical examinations", 22.39% suggest for "individual guidance", 12.54% think of lowering the teacher-student ratio", 14.03% favouring" moral instruction" 20.6% support "social work activities", 19.4% propose "practical work experience", 8.96% in favour of parents participation, 12,84% suggest "syllabus reform", 8.66% for Vocational education. There views incoroporate allmost all aspects with which Higher secondary & college education should be concerned of.

nspite of there views, the parents send their children mainly for getting a degree.

I present below some of the specefic suggestions received from the respondent

1. Learned and experienced teachers be appointed based on their motivation for a teaching career, rather than those who seek employment only. This would facilitate effective teaching.
2. Regular classes add to the sineerity and effectiveness of education both for the teachers and banners.
3. Periodical examinations/evaluations should be done frequently without prior notice
4. Individual counselling should be part of the Institutional goal.
5. Discussion oriented teaching should receive emphasis rather than Lecture-oriented method.
6. In under graduate level the teacher/student ratio should not be more than 1;32
7. Moral Inspection should be mandatory for all Higher secondary college level programmes.
8. Social service aptitude should be encouraged, like sports and atheletic activities.
9. There should be scope for "work-experience" alongwith formal class-room instruction.
10. Parents should be encouraged to take active interest in educating the children.
11. The syllabus should be reformed as often as possible incorporating new knowledge, which will in return minimise unemployment.

These suggestions come from parents and guardians of Bhubaneswar and their views regarding "ideal" type of Higher secondary or college level education. This can be effective only when parents and teachers share each others views regarding education of the younger generation, But it is found from this study that most of the parents and guardians donot provide adequate attention regarding the education of their children. It is reflected from the study that 80 of the guardians prefer or are forced to prefer appointment of "tution masters"

This is perhaps, a pioneering study of the attitude of parents towards the kind of educational institutions we have in Bhubaneswar. Further studies may reveal the gap between the policy makers thinking and the thinking of the citizens.

—0—

# Acharya Harihar Mahavidyalaya (AHM)

A Constiiuent Unit of AHEDS

( 5. 9. 81 )

**Sri Gangadhar Mahapatra**
Hon. Patron

**Prof. Satrughna Nath**
Hon. Patron

The college was established on 5.9.81 to provide college education in Arts and Commerce. The college is now affiliated to CHSE and recognised by Orissa Government.

The college is managed by a Managing Committee nominated by AHEDS.

| | |
|---|---|
| Er. Benudhar Mahapatra | —Chairman |
| Smt. Kuntala K. Acharya | —Vice-chairperson |
| Dr. Chitta Samant | — Secretary |

Members

| | |
|---|---|
| Dr. Bhabagrahi Misra | Smt. Kalyani Pattnaik |
| Sri Biraja S. Acharya | Sri Prafulla K. Dash |
| Sri Nityananda Mahapatra | Dr. Bishnupada Panda |
| Er. Madhusudan Dash | Sri Ramesh Ch. Dhail |
| Sri Chitta Misra | Smt. Shantilata Misra |

The Management Committee has now formally applied to the State Govt. to begin Degree (+3) Classes in Arts & Commerce. Govt. recognition is awaited.

Bankers : 1. M/S PUNJAB NATIONAL BANK
Station Road, Bhubaneswar
2. M/S ANDHRA BANK
Madhusudan Nagar, Bhubaneswar

Auditors : M/S A.K. KAR & CO.
Saheed Nagar
Bhubaneswar

# Kantakavi Fund (KKF)

(11.11.87)

The Acharya Harihar Education Society established this Fund on 11. 11. 87. The Fund was created by family members and relatives of Kantakavi Laxmikanta Mahapatra. The KKF will continue to publish monographs & books on & by Kantakavi Laxmikanta and offer prizes and awards.

Smt. Kuntala K. Acharya—Chairperson

Sri Mahabhababprakash Mahapatra—Secretary

Dr. Bhabagrahi Misra—Member

Sri Ramesh Ch. Dhall—

Sri Pradosh Pattnaik —

—0—

# Folklore Academy, Bhubaneswar (FAB)

(24.11.87)

Folklorists of Orissa met at Santiniketan, West Bengal and established this organisation as a Department of AHEDS on **24.11.87.**

The following are founder Life-members.

Dr. Bhabagrahi Misra, Chairman

Dr. Shyam Sundar Mahapatra, Secretary

Dr. Mahendra K. Misra ( Kalahandi )

Sri Khirod Ch. Misra ( Cuttack )

Dr. Anjali Padhi ( Kalahandi )

On 28. 6. 89 Smt. Anjali Padhi, Lecturer in Oriya, Khadial College was awarded Ph.D Degree by Berhampur University. She completed her thesis "Khadiala Anchalara

Loka Samskruti" under the guidance of the chairman, FAB and Dr. G. N. Dash, Profesor of Linguistics, Berhampur University. She received a ICSSR Grant to conduct field work.

Sri Mihir Kumar Sahu was awarded Ph.D degree by Visva-Bharati University, Santiniketan for his thesis "Odia Upanyasare Loka Samskruti" under the guidance of the Secretary FAB.

Dr. Mahendra Mishra completed a short monograph on "**Folksongs of Kalahandi**" published by MAYUR PUBLICATIONS, Bhubaneswar.



# Bairagi Misra Institute of Technical Education (BMITE)

(20.5.89)

With more than five years experience in organising tutorial classes in Engineering, AHEDS has formally established BMITE to provide various Engineering, Technical and allied education on a nonformal basis from 20. 5. 89. BMITE will remain as a constituent Unit of AHEDS.

| | | |
|---|---|---|
| Dr. Bhabagrahi Misra | - | Chairman |
| Sri Biraja S. Acharya | - | Secretary |
| Smt. Shantilata Misra | - | Member |
| Dr. B. B. Rath | | Member |
| Sri R. C. Dhall | - | Member |
| Smt. Kuntala K. Acharya | - | Member |
| Dr. Anjali Padhi | - | Member |

Banker : **M/s Indian Bank**
OK & V.I.B. Extn Counter
Janpath, Bhubaneswar

## Publications Deparment
## AHEDS

The following books have been published so far :

1. Acharya Harihar Smaraki (1984) (Out of Print)
2. Acharya Harihar Smaraki (1988) (Revised edition)
3. Acharya Harihar Smarane (Poetry - In Press)
4. Acharya Harihar : An Illustrious son of Orissa (In Press)
5. Bairagi Misra : A Biography (In Press)

—0—

Sneha Press, S/8 Unit-4 Market, Bhubaneswar-751001